"ଝିବ କି ନ ଝିଁବ ଅଙ୍ଗ ପଶୁରୁଛ ଯାହା
ଦେହର ଛାଇକି ଦେହ ପଶୁରିଲେ ତାହା
ହୁନ୍ତା ଯେଡ଼େ ଅଘଟଣ
ତା ତହୁଁ ଏ କଥା ତୁମ୍ଭ ମୁହଁରେ ଦୂଷଣ । ୪ ।

"ମାନବକ ଅଟଙ୍କା ମୁହିଁ ଚେଲିଙ୍ଗ ଅବଳା
ମୋହ ଲଗି ଭାଙ୍ଗି କେବେହେ ସମାଜ-ଅର୍ଗଳା
ହେବ ସୁଖୀ ମୋତେ କହ
ମଞ୍ଜୁଳା ନୋହିବ ଜୀବଧବ-ଗଳଗ୍ରହ" । ୫ ।

( ମାଧବ )

"ଜାଣିନାହୁଁ ବାନ୍ଧବ ! କି ସଂସାର-ବନ୍ଧନ
ଗଳା ଦଉଁ ପିତାମାତା ହେଲଣି ଛେଦନ ।
ଖୋଲି ମଞ୍ଜୁଳା ! ତୋ ଆଶ
ଏ ମୁକ୍ତ ଚରଣ ଯୁଗଳରେ ନୁଆ ଫାଶ । ୬ ।

ମଞ୍ଜୁଳା ସମାଜ ମୋର, ମଞ୍ଜୁଳା ମୋ ଜାତି,
ମଞ୍ଜୁଳା ବିହୁନେ ମୋର ନାହିଁ ଅନ ଜ୍ଞାତି :
ମଞ୍ଜୁଳାକୁ ଛାଡ଼ି କରି
ମଞ୍ଜୁଳ ହୋଇ ଏ ବିଶ୍ୱ ନାହିଁ କିଛି ଧରି । ୭ ।

---

୪ । ଅଘଟଣ—ଅସୁନ୍ଦର; ଦୂଷଣ – ନିନ୍ଦାର ବିଷୟ ।

୫ । ଅର୍ଗଳା – ବନ୍ଧନ; କଟକଣା; ଜୀବଧବ-ଗଳଗ୍ରହ—ପ୍ରାଣବନ୍ଧୁଙ୍କ ଉପରକୁ ବୋଝ ।

୬ । ମୁକ୍ତ—ବନ୍ଧନ ଶୂନ୍ୟ; ନୂଆ ଫାଶ – ନୂଆ ବନ୍ଧନ ।

୭ । ମଞ୍ଜୁଳ – ସୁନ୍ଦର ।

"ଗଛମୂଳେ ପାତି ଧନ ଉଦ୍ଧଳେ ଉପାସ
ମଞ୍ଜୁଳା ରେ ! ସ୍ମିତ ତୋର ଦେବ ମୋତେ ଗ୍ରାସ ।
ତୋର କୁପିତ ସମ୍ଭାଷ
କର୍ଣ୍ଣବଲେ ପଶି ହେବ ମୋ ଚିତ୍ତ-ପୀୟୂଷ । ୮ ।

"ଦୂଷଣ ଘୋଷଣ ବାଜୁ ନାହିଁ ମୋର ଡର
ଡର କିସ ତାକୁ ଚିତ୍ତ ନେଲଣି ଯା ଚୋର ?
ଅଟେ ମୋ ଚିତ୍ତ-ଚୋରଣି !
ଚୋର-ଦଣ୍ଡ ଦେବ ନେଇ ଉତ୍କଳ-ଅବନୀ । ୯ ।

"ଗଜପତି-ଚିତ୍ତ ହିବ ଜେମା ପଦ୍ମାବତୀ
ପ୍ରେମ-ରାଷ୍ଟ୍ର-ଅଧିକରଣରେ ଯେଉଁ ଶାସ୍ତି
ଏବେ ଅଛନ୍ତି ମୂଳର;
ସେ ଶାସ୍ତି ହୋଇଛି ଥିଆ ମଞ୍ଜୁଳା ! ତୋ ପାଇଁ ।୧୦।"

---

୮ । କୁପିତ ସମ୍ଭାଷ—ରାଗ ବେଳର କଥା; ଚିତ୍ତ-ପୀୟୂଷ—ହୃଦୟର ଅମୃତ; ( ତୁଳନାକର ) "ଭାଷା କହିଲ ବେଳେ ନାଶା ଫୁଲାଇ । ଚକ୍ରବର୍ତ୍ତୀପଣକୁ ଗଣନ୍ତି ନାହିଁ ।"—ଉପେନ୍ଦ୍ର ଭଞ୍ଜ ।

୯ । ଦୂଷଣ ଘୋଷଣ ବାଜୁ—ନିନ୍ଦା ରଟୁ ପଛକେ; (ତୁଳନାକର) "ବାଜୁ ଦୂଷଣ ଘୋଷଣ । ହେଲେ ହେଉ ପଛେ ନାନା କଷଣ ଗୋ । ମୁଁ ତ କଲଣି ନିନ୍ଦା ଭୂଷଣ; ସଜନି ଗୋ ।"—ଅଭିମନ୍ୟୁ ସାମନ୍ତ ସିଂହାର ।

୧୦ । ଗଜପତି—ପୁରୁଷୋତ୍ତମ ଦେବ ଓଡ଼ିଶାର ଗଜପତି ମହାରାଜା; ରାଷ୍ଟ୍ର—ରାଜ୍ୟ; ଅଧିକରଣ—ବିଚାରାଳୟ; ଶାସ୍ତି—ଦଣ୍ଡ ।

( ମଞ୍ଜୁଳା )

"ନାଗେ ସ୍ୱୈର ହୋଇ ପରେ ବୋଲୁଛ ସ୍ୱୈରଣୀ
ଧନ୍ୟ ରେ ଓଡ଼ିଆ ! ଧନ୍ୟ ତୁମ୍ଭର କରଣି
ନେଲ କାଞ୍ଚୀ-ସ୍ୱାଧୀନତା
ଓଲଟି ଦଣ୍ଡିବ କାଞ୍ଚୀ-ନଗରେ-ବନିତା । ୧୧ ।

"ସାକ୍ଷୀ ଥାଅ ହେ ଚନ୍ଦ୍ରମା ! ପର୍ବ-ବୈଶ୍ରବଣ
ଗଣ୍ଡ-ସ୍ୱୈର-ଗଳେ ଲଗାଇଲ ବାହୁପାଶ
ଚିଣ୍ଡ ନ ଦେଲେ ଫେରାଇ,
ଏହାଂ କର୍କଶତା ନ ଦେବଇଁ କୋହଲାଇଁ" ।୧୨।

ହସୁଥିଲା କାଞ୍ଚୀପୁରେ ସୁହାସିନୀ ରକା
ହସିଲା ଗଗନେ ଇନ୍ଦୁ, ହସିଲେ ତାରକା
ଦେଖି ଏ ମଧୁର ଯୋଗ,
ଶୁଣି ପୁଣି ପ୍ରୀତ-କଇତବ-ଅଭିଯୋଗ ।୧୩।

୧୯୩୭



---

୧୧ । କରଣି—କାମ ।

୧୨ । ପର୍ବ—ପୂର୍ଣ୍ଣିମା; ବୈଶ୍ରବଣ—ସ୍ୱବରର ଅଧିପତି ବା ସ୍ୱାମୀ ଅର୍ଥାତ୍ ଚନ୍ଦ୍ର;
କର୍କଶତା—ବାହୁପାଶର କଠିନତା ।

୧୩ । ରକା—ପୂର୍ଣ୍ଣିମା; ଇନ୍ଦୁ—ଚନ୍ଦ୍ର; ମଧୁର ଯୋଗ—ମଧୁର ମିଳନ;
କଇତବ—ମିଛିମିଛିକା; ଅଭିଯୋଗ—ଦୋଷ ଦିଅଦେଇ ।



—୪—

# ଶକୁନ୍ତଳାଙ୍କ ପତିଗୃହ ଯାତ୍ରା

( ରାଗ—ଦେଶାକ୍ଷ )

ପତିଗୃହେ ଶକୁନ୍ତଳା କରିବେ ଗମନ
ଭାଳି କଣ୍ୱାଶ୍ରମ ଅଙ୍ଗ ବିଷାଦେ ମଗନ । ୧ ।
ପୁଷ୍ପପାତ ଛଳେ ତରୁ ଲୋତକ ପକାଇ,
କାନ୍ଦନ୍ତି ସରଳା-ସଖୀ-ଗୁଣଗଣ ଧ୍ୟାଇ ।୨।
ଶୋକର ତାମସୀ ଛାୟା କାୟାକୁ ବିସ୍ତାରି
ଆଶ୍ରମର ଚଉଦିଗ ଅଛଇ ଆବୋରି । ୩ ।
ବୃଦ୍ଧା ଗଉତମୀ ପ୍ରିୟମ୍ୱଦା ଅନସୂୟା
କରନ୍ତି ବିଳାପ ହୋଇ ଅକୁଳ ହୃଦୟା । ୪ ।
ନିର୍ବିକାର କଣ୍ୱ ମୁନି ବିକାରକୁ ଭଜି
ନୀରବେ କରନ୍ତି ଶୋକ ଲୋତକ ବରଜି । ୫ ।
ଗୃହି-ଜନ-ସୁଲଭ ଏ ଶୋକାବେଗ ପୁଣି
ଲକ୍ଷି ହେଉଛନ୍ତି ମୁନି ହୃଦ ମଧ୍ୟେ ଘୁଣି । ୬ ।
"ଶକୁନ୍ତଳା ପତିଗୃହେ କରିବ ଗମନ
ଜଡୀଭୂତ ନେତ୍ର ମୋର କଣ୍ଠ ବାକ୍ୟହୀନ । ୭ ।
ବନବାସୀ ତାପସ ମୁଁ; ମାୟା ମୋ ଏସନ
କନ୍ୟା ତେଜି ନୋହୁଥିବେ କିସ ଗୃହୀ ଜନ । ୮ ।"

---

୧ । କଣ୍ୱାଶ୍ରମ—କଣ୍ୱ ମୁନି ଅର୍ଥାତ୍ ଶକୁନ୍ତଳାଙ୍କ ପାଳକ ପିତାଙ୍କ ଆଶ୍ରମ ।

୨ । ଗୁଣଗଣ—ଗୁଣ ସମୂହ; ଧ୍ୟାୟି—ସୁମରି ।

୫ । ନିର୍ବିକାର—ଦୁଃଖ ସୁଖରେ ଅବିଚଳିତ ।

୮ । ତାପସ—ଋଷି ।

ଶଲୁଁ ଏହି ବଚନ ମୁନି ନବୀନ ଦୁକୂଳେ
ମଣ୍ଡି ବପୁ ଶକୁନ୍ତଳା, ଚରଣର ତଳେ । ୯ ।

ପ୍ରଣମି ମାଗିଲେ ଧର୍ମୀ ବିଦାୟ କରୁଣ
ଶୋକ-ନଦୀ-ବାନ୍ଧ ଭଗ୍ନ କରି ତତକ୍ଷଣ
ଲୋତକରେ କରି ସିକ୍ତ ଭାଷା ମୁନିବର
ବାହିଲେ ଅଶିଷ "ବତ୍ସେ ! ଲଭ ଗୋ ସତ୍ୱର
ସୁତ ରାଜଚକ୍ରବର୍ତ୍ତି-ଲକ୍ଷଣ-ସଂଯୁତ,
ସଧବା ସିନ୍ଦୂର ଶିରେ ରହୁ ମା ! ଅକ୍ଷତ । ୧୨ ।

ତରୁଗଣେ ସମ୍ବୋଧିଣ କହନ୍ତି ତାପସ
"ତୁମ୍ଭଙ୍କୁ ନ ଦେଇ ଜଳ ଯେ ଜଳ ସ୍ପରଶ
କରେନାହିଁ, ହୋଇ ଯେହୁ ଭୂଷଣ-ରଙ୍ଗିଣୀ
ପଲ୍ଲବ ତୁମ୍ଭର ଦନେ କରେନାହିଁ ହାନି ।
କୁସୁମ ଉଦ୍‌ଗମେ ତୁମ୍ଭ, ହୃଦୟ ଯାହାର
ଆନନ୍ଦରେ ହେଉଥିଲ ଉଦ୍‌ବେଳ ଗୋ ତାର
ପତି-ଗୃହ-ଯାତ୍ରା ଆଜ, ଉଲ୍ଲସିତ ମନେ
ବିଦାୟ ଦିଅ ଆଶ୍ରମ ମହୀରୁହଗଣେ ! । ୧୬ ।

---

୯ । ଦୁକୂଳ—ବସ୍ତ୍ର; ବପୁ—ଦେହ ।

୧୧ । ୧୨ । ଲୋତକରେ କରି ସିକ୍ତ ଭାଷା—କୋହରେ କଣ୍ଠ ରୋଧକରି; ବାହିଲେ ଅଶିଷ—ଆଶୀର୍ବାଦ କଲେ ।

୧୩ । ୧୬ । ସମ୍ବୋଧିଣ—ଡାକି; କୁସୁମ ଉଦ୍‌ଗମେ—ଫୁଲ ଫୁଟି ବାହାରିଲେ; ମହୀରୁହ—ତରୁ ।

ଏକାଳେ ଗାବନ୍ତେ ପିକ ତରୁ-ଡାଳେ ବସି
ପଡ଼ନ୍ତେ ପୁଷ୍ପନିବହ ବାୟୁଯୋଗେ ଖସି
ତରୁଗଣ ଏ ସବୁକୁ କରି ବ୍ୟପଦେଶ
ଦେଲେ ଅନୁମତି ବୋଲି ଜାଣିଲେ ମୁନୀଶ । ୧୮ ।

ପ୍ରିୟସଖୀ ପାଇଁ ଶୋକେ ହୋଇଣ ଗଦ୍‌ଗଦା
ଗଗନ ଫଟାଇ କଳପିଲା ପ୍ରିୟମ୍ବଦା
ଅସନ୍ନ-ସଖୀ-ବିରହେ ଅନସୂୟା ପୁଣି
କଣ୍ଠେ ତା ମିଳାଇ କଣ୍ଠ କାନ୍ଦିଲା ଦୁଃଖିନୀ । ୨୦ ।

ଶକୁନ୍ତଳା-ବସନାନ୍ତ ଧରି ମୃଗଶାବ
ଟାଣନ୍ତେ ସୁନ୍ଦର ମୁଖେ ବିଷାଦ ନୀରବ
ଭାଷିଲେ ତାପସ "ବତ୍ସେ ! କୁଶାଗ୍ରେ ଯା ମୁଖ
କ୍ଷତ ହୁଅନ୍ତେ ମନେ ତୁମ୍ଭେ ବହି ଗୁରୁ ଦୁଃଖ,
ଇଙ୍ଗୁଦୀ-ତଇଳ ଲେପି ଶୁଖାଇଲ ବ୍ରଣ
ନୀବାର ତଣ୍ଡୁଳେ ତୁମ୍ଭ, ପୁଷ୍ଟ ଯା ଜୀବନ;
ମାତୃହୀନ ସେହୁ ମୃଗଶାବ ତୁମ୍ଭ ଗତି
ବସନାନ୍ତ ଟାଣି ରୋଧେ, ବିଷାଦ ତ ଅତି । ୨୪ ।

ବାତ୍ସଲ୍ୟରେ ବିଗଳିତ ହୁଅନ୍ତେ ଅନ୍ତର
ସମ୍ଭାଷିଲେ ସ୍ନେହଶୀଳା ମୃଗଶାବେ ଚିର
"ପାଳିଥିଲି ତୋତେ ତୋର ମାଆ ଯାନ୍ତେ ମରି
ପଛେ ଗୋଡ଼ାଉ କା ବାଟ ! ସେ କଥା ସୁମରି ?

---

୧୭ । ୧୮ । ନିବହ—ସମୂହ, ସବୁ; ବ୍ୟପଦେଶ—ଛଳ, ସଙ୍କେତ ।
୧୯ । ୨୦ । ଗଦ୍‌ଗଦା—ଆକୁଳା; କଳପିଲ—କାନ୍ଦିଲ ।
୨୧ । ୨୪ । ବସନାନ୍ତ—ଲୁଗାକାନି; ଶାବ—ଛୁଆ; ବ୍ରଣ—ଘାଆ ।

ଯାଉଛି ମୁଁ ପିତୃଦେବ ତୋତେ ଅଜଠାରୁ
ଲାଗିଲେ ରେ ବାଟ'! ତୁହି ରହ ଏଥିଠାରୁ' । ୨୭ ।
ଝରିଲା ନୟନୁଁ ନୀର ହେଲା କଣ୍ଠରୋଧ
ନ ମାନିଲେ ଗୁରୁଶୀଳା କାହାରି ପ୍ରବୋଧ । ୨୮ ।
ଶାର୍ଙ୍ଗ ରବେ ସ୍ତୁହିଁ ମୁନି ଭାଷନ୍ତି ଏକାଳେ
"ଶକୁନ୍ତଳା ସହ ବସ୍ତୁ ! ଯିବ ନୃପ ଅଳେ । ୨୯ ।
ଭାଷିବ ତାହାଙ୍କୁ ଅମ୍ଭେ ବନବାସୀଜନ
ତପସ୍ୟା ବିହୁନେ ଅମ୍ଭ ନାହିଁ ଅନ ଧନ । ୩୦ ।
ସରଳା ଏ ଶକୁନ୍ତଳା, ପ୍ରଣୟ ପ୍ରବୃତ୍ତି
ସରଳ ବେଶରେ ପ୍ରକାଶିଛି ତାଙ୍କ ପ୍ରତି । ୩୧ ।
କଳସି-କାଙ୍କ୍ଷିତ ପତି ସୁହାଗ-ସମ୍ଭାର
ଲଭିଲେ ସେ, ହେବ ତୋଷ ଅନ୍ତର ଅମ୍ଭର । ୩୨ ।
ନ ମାଗୁଁଛୁଁ ଅନ କିଛି" । "ଶୁଣ ଶକୁନ୍ତଳେ !
ଆଚରିବ ଗୁରୁଜନସେବା ପତିଅଳେ । ୩୩ ।
ମଣିବ ସପତ୍ନୀଗଣେ ପ୍ରିୟସଖୀ ସମ
ନ ଧରିବ ପତିଦୋଷ ରୋଷେ ହୁଡ଼ି କର । ୩୪ ।
ପତି ରୁଷ୍ଟ ହେଲେ ହୋଇ ବିରୁଦ୍ଧାଚାରିଣୀ
ନୋହିବ କଦାଚ ତାଙ୍କ ବିରାଗ-ଭାଗିନୀ । ୩୫ ।

---

୩୧ । ସରଳ ବେଶରେ...ଇତ୍ୟାଦି—ସ୍ପଷ୍ଟପଣରେ ତାଙ୍କୁ ହୃଦୟ ଦାନ କରିଅଛି ।

୩୨ । କଳସ—ଈର୍ଷ୍ୟା; କାଙ୍କ୍ଷିତ—ଇପ୍ସିତ, ଇଚ୍ଛା କରୁଥିବା; ସୁହାଗସମ୍ଭାର—ସ୍ନେହରୂପ ଧନ ।

୩୩ । ଅଳେ—ଘରେ ।

ବିଳାସେ ଆସକ୍ତ କେବେଁ ନୋହେ ତୋ ଉଚିତ
ପରିଜନେ ଅନୁକମ୍ପା ବିହ୍ୱବ ମା ! ନିତ୍ୟ । ୩୬ ।
ଏହାର ଅନାଥା କଲେ ମିଳେ ଅପଯଶ
ମନଃଶୂଳ ହୁଏ ବଧୂ ସଭିଙ୍କ ଅବଶ୍ୟ । ୩୭ ।
ଦିଅ ମା ! ମେଲଣି ଏବେ ସଖୀଙ୍କି ତୋହର
ନ ଯିବେ ତୋ ସଙ୍ଗେ ସେ ତ ଅଉ ବେଶୀ ଦୂର । ୩୮ ।
ମୋତେ ମା ! ବିଦାୟ ଦିଅ ଦେଇ ଶୁଭାଶିଷ
ପୂରନ୍ତୁ କାମନା ତୋର ପ୍ରଭୁ ଜଗଦୀଶ । ୩୯ ।
ପ୍ରାଚୀ ପ୍ରସବଇ ଯେସନେ ସହସ୍ରଦୀଧିତି
ସୁପୁତ୍ର ତେସନ କୋଳେ ବହି ଅଯୂଷ୍ଟତ ! । ୪୦ ।
ମୋ ବିଚ୍ଛେଦ-ବ୍ୟଥା ତ୍ୱର ହୁଅ ଗୋ ବିସ୍ମୃତ
ବିଷୟବ୍ୟାପାରେ ସଦା ନିବେଶ ମା ! ଚିତ୍ତ । ୪୧ ।
ଶୋକାତୁର ଶକୁନ୍ତଳା ସଖୀଙ୍କି ଆଲିଙ୍ଗି
ଭାଷନ୍ତି "ମେଣ୍ଟ ଆମ୍ଭର ବିଧି ଦେଲା ଭାଙ୍ଗି । ୪୨ ।
ସଖୀଏ ! ଏହି କି ମୋର ଶେଷ ଆଲିଙ୍ଗନ
ଏହି କି ଲୋ ଏ ଆଶ୍ରମେ ଶେଷ ସମ୍ଭାଷଣ ? ୪୩ ।

---

୩୬ । ପରିଜନ—ଗୃହର ଗୃହବାସୀ; ଅନୁକମ୍ପା—ଦୟା; ନିତ୍ୟ—ସବୁବେଳେ ।

୩୭ । ମନଃଶୂଳ—ଅପ୍ରିୟ ।

୪୦ । ପ୍ରାଚୀ—ପୂର୍ବଦିଗ; ସହସ୍ରଦୀଧିତି—ସୂର୍ଯ୍ୟ ।

୪୧ । ତ୍ୱର—ଶୀଘ୍ର; ବିଷୟ ବ୍ୟାପାରେ—ସଂସାର ଧନ୍ଦାରେ; ନିବେଶ ମା ! ଚିତ୍ତ—ହେ ମା ! ମନ ଦିଅ ।

୪୨ । ମେଣ୍ଟ—ମେଳ । ୪୭ । ଜରାଗମେ—ବୃଦ୍ଧ ବୟସ ହେଲେ ।

ପ୍ରିୟମ୍ବଦେ ! ଅନସୂୟେ ! କହ ସତ କର
ଦୁଃଖିନୀର ସ୍ମୃତ ହୃଦେ ଥିବ କି ଧର । ୪୪ ।
ଇହ ପିତଃ କହୁ କେବେ ଅପି ଏ ରଙ୍କୁଣୀ
ଏ ଆଶ୍ରମ ନିରେଖିବ ନେଖିବ ପୁଣି" । ୪୫ ।
ଭାଷିଲେ ତାପସ 'ବତ୍ସେ ! ବିଶାଳ ଅବନୀ
ସପତ୍ନୀ ସମାନ ଲଭି, ହୋଇ ରାଜରାଣୀ । ୪୬ ।
ଜବାଳମେ ଯୁଙ୍ଗଂଭାର ଦେଇ ସୁତ କରେ
ଆଚରିବ ବାନପ୍ରସ୍ଥ ଏହୁ ଆଶ୍ରମରେ । ୪୭ ।
ସେ ଅଛୁ ବହୁତ ଦିନ । ନୁହ ଗୋ ଚିନ୍ତିତା
ପତିଗୃହେ ପତିସେବା କର ପତିବ୍ରତା ! ।୪୮ ।
ତପସ୍ୟାର ବେଳା ଏବେ ହେଲାଣି ଅଗତ
ଯାଏଁ ମାଆ ! ନିରାପଦ ହେଉ ତୁମ୍ଭ ପଥ ।୪୯ ।
ପ୍ରଣମିଣ ଶକୁନ୍ତଳା ଗଲେ ପତିଗୃହ
ଶାର୍ଙ୍ଗରବ, ଶାରଦ୍ୱତ, ଗଉତମୀ ସହ ।୫୦ ।
ଚନ୍ଦ୍ରିକା ବହୁନେ ଯଥା ଦିଶଇ ଯାମିନୀ
ଦାମିନୀ ପ୍ରସ୍ଥାଣେ ଯଥା ଦିଶେ କାଦମ୍ବିନୀ । ୫୧ ।
ଶକୁନ୍ତଳା ଯାନ୍ତେ ଚଳି ତଥା ତପୋବନ
ଦିଶିଲା ସପଦ ହତଶିରୀ ଅଶୋଭନ । ୫୨ ।



୫୧ । ଯାମିନୀ—ରାତି; ଦାମିନୀ—ବିଜୁଳି; କାଦମ୍ବିନୀ—ମେଘ ।
୫୨ । ସପଦ—ଶାଘ୍ର ।



—୬—

# ଲାଲସୀ ଏ ସାର ପରାଣ

( ବଗ ଶ୍ରେଣୀ )

ଲାଜର ମନା ନ ମାନି ଅବାଧ ନୟନ ବେନି
ଅଳି ସମ ଅୟି ଧନି ! ମୁଖେ ତୋ ମଜ୍ଜେ,
ଅନ୍ତର ତରଳ ହୋଇ ଅଜାଣତେ ଯାଏ ବନ୍ଧୁ
ଚୁମ୍ବିବ ଅବନ୍ତି ହୋଇ ତୋ ପଦକଞ୍ଜେ,
ଲାଲସୀ ଏ ସାର ପରାଣ,
ନିଃଶେଷେ ତୋ ରୂପସୁଧା କରିବ ପାନ ।

୧୯୪୪



---

ଅବାଧ୍ୟ — ଅମାନିଆଁ; ଧନି — ପ୍ରିୟା; ଅନ୍ତର — ଚିତ୍ତ; ଅବନ୍ତି—ଓଅଁର; କଞ୍ଜ—ପଦ୍ମ; ଲାଲସୀ—ଅତୀବ ଆଗ୍ରହୀ; ନିଃଶେଷି—ଟିକିଏ ହେଲେ ବଳକା ନ ରଖି; ରୂପସୁଧା—ରୂପ ରୂପକ ଅମୃତ ।]



—୨—

# ଗୋପାଳଚନ୍ଦ୍ର ପ୍ରହରାଜ *

( ୧ )

ରାଗ—ବସନ୍ତ

ଦିଗପାଳ ସମ ମଟେ ହୁଏ ମମ ଉତ୍କଳ ସାହିତ୍ୟ କ୍ଷେତ୍ରେ ସେ
ରାଜୁଥିଲ ତୁମ୍ଭେ ହେ ଗୋପାଳଚନ୍ଦ୍ର ! ଦେଇ ମୋଦ କୋଟି ନେତ୍ରେ
ସାଧକ ! ସିଦ୍ଧ ତ ହେଲ ସାଧନା ହେ
ପ୍ରପଞ୍ଚ ମଞ୍ଚରେ ବେଶି କାହିଁ ଆଉ ରହନ୍ତି ଟି ମହାମନା ହେ ?
ଜଳ ଫଳବନ୍ତ 'ଭାଷାକୋଷ'—ତରୁ ପାଣି ଫଟାଇ ଶୋଣିତ ହେ ।
ଏଣୁ ଏଥିପାଇଁ ଚଉଥ-ଶତାବ୍ଦୀ ଜୀବନକୁ କଲ ଦତ୍ତ ହେ
ସାଧକ ! ସାତ ଖଣ୍ଡ ଭାଷାକୋଷ ହେ
ସାଧନାର ସପ୍ତ ସାଗର ତୁମ୍ଭର, କାଟିଲ ରଚେ ଉପହାସ ହେ ।
ରସାଳ ଲେଖନୀ ଧରି ଗୁଣମଣି ! 'ନନାଙ୍କ ବସ୍ତାନୀ ଅଦ ହେ',
ଅମୂଲ୍ୟ ଅତୁଳ ରଚନ ପ୍ରଚୁଳ ଯାଇଛ ଯାହା ସମ୍ପାଦ ହେ
ରସିକ ! ରହି ଶଣୀ ଥିବା ଯାଚକେ ହେ
କଳିଙ୍ଗ-ଭାରତୀ-କଣ୍ଠାରେ ତା ଆଭା ମଉଳିବ ନାହିଁ ଟିକେ ହେ ।

---

* କଟକ ଟାଉନ ହଲରେ ଅନୁଷ୍ଠିତ ପ୍ରଥମ ଶୋକସଭାରେ ଗାନ ହୋଇଥିଲା ।

୧ । ମୋଦ—ଆନନ୍ଦ; ପ୍ରପଞ୍ଚ—ଖଳ, ମଞ୍ଚ—ମର୍ତ୍ତ୍ୟପୁର ।

୨ । ଭାଷାକୋଷ — ସାତଖଣ୍ଡରେ ସମାପ୍ତ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ; ଚଉଥ—ଚଉଠ ।

୩ । "ନନାଙ୍କବସ୍ତାନୀ" ପ୍ରଭୃତି ପୁସ୍ତକ ପ୍ରହରାଜଙ୍କ ହାସ୍ୟୋଦ୍ଦୀପକ ସାହିତ୍ୟ ସୃଷ୍ଟିର ଚରମ—ଓଡ଼ିଆ ସାହିତ୍ୟ ରାଜ୍ୟରେ ଅତୁଳନୀୟ; ପ୍ରଚୁଳ—ପ୍ରଚୁର ।

ସାହିତ୍ୟ ଜଗତେ ଥିଲ ଛତ୍ରପତି, ମାନବ କୁଳରେ ହୀରା ହେ
ଦୀନ ହେଲା ଆଜ ଉତ୍କଳ ମାଆର ଦୟା-ସୌଜନ୍ୟ-ପସରା ହେ
ଦୟାଳୁ ! ସସ୍ମିତ ବଚନ ଧନ ହେ !
କୋଟି ତରୁଣଙ୍କ ପ୍ରିୟ 'ବାବା'-ଡାକ କେଣେ ହେଲ ଅନ୍ତର୍ଦ୍ଧାନ ହେ

ଆଜ ସଭାଙ୍କର ଅଛୁ ପଟାନ୍ତର ପଟାନ୍ତର ତୁମ୍ଭ କାହିଁ ହେ
ଶିଖରୀ ହୋଇଣ ତୃଣକୁ ଶିଖର ପାରେ କେ ଆଉ ନୁଆଇଁ ହେ
ଗୋପାଳ ! ହୃଦ ତୁମ୍ଭ ସ୍ନେହ-କୂପ ହେ
ସ୍ୱାଧୀନ ବଛନ୍ଦ ପରଜା ତୁମ୍ଭର ତୁମ୍ଭେ ତା ଆରାଧ୍ୟ ଭୂପ ହେ ।

୧୯୪୫

---

୪ । ଛତ୍ରପତି ରଜା । ସସ୍ମିତ—ହସହସ, 'ବାବା'—ପ୍ରହରାଜ ମହୋଦୟଙ୍କୁ ସମସ୍ତେ ବାବା ଡାକୁଥିଲେ । ଏ ଡାକ ତାଙ୍କ ଅପାର ବାତ୍ସଲ୍ୟର ସୂଚକ ଥିଲା ।

୫ । ପଟାନ୍ତର—ତୁଳନା; ଶିଖରୀ—ପର୍ବତ; ଶିଖର—ପର୍ବତର ଶୀର୍ଷ; ତୃଣ—ଘାସ; ଭୂପ—ରଜା; କବି ବ୍ୟକ୍ତିଗତ ଭାବରେ ପ୍ରହରାଜଙ୍କ ନିକଟରେ ବନ୍ଧୁ ଭାବରେ ଋଣୀ । ପ୍ରହରାଜେ କବିଙ୍କର ବୟଦବନ୍ଧୁ ।



—୭—

# ବର୍ଷ-ବିଦାୟ

ଶ୍ରୀ—ଅଶାବରୀ

'ଯାହା ଇଚ୍ଛା ତାହା ହେଉ ଗୋ ପ୍ରିୟସଙ୍ଗ ରେ' ବୃତ୍ତରେ )

ମିଳନ ତ ଏବେ ଶେଷ ହେ ପ୍ରିୟଙ୍କର !
ଅତୀତ ଗରଭେ ହଜାଇଲା ସତ୍ତା
ଅଜଠାରୁ ଏ ବରଷ ହେ ! ଘୋଷା ।

କଳା-ଗରବିଣୀ କଳିଙ୍ଗ ଅବନୀ
ନବ ସାରସ୍ୱତ ଦୀକ୍ଷା
ମାହେନ୍ଦ୍ର ସୁଯୋଗେ ଦେଉ ନବ ଯୁଗେ
କର ବାଣୀ-ପଦେ ଭିକ୍ଷା ହେ । ୧ ।

ସଂକୀର୍ଣ୍ଣ ବେଷ୍ଟନୀ ତେଜ ମୁଦେ ଧନୀ
ବିଶ୍ୱାଙ୍ଗନେ ପରବେଶୁ
ଖେଳେ ନବେ ଅଜ ବିଶ୍ୱଭାବ ରଜ
ତହିଁ ତା ଚଉ ବିଳସୁ । ୨ ।

କଳିଙ୍ଗ ଅତୀତ ଗଉରବ ପୂତ
କଳିଙ୍ଗର ବର୍ତ୍ତମାନ
ପ୍ରଭୁ ଜଗଦୀଶ ମଙ୍ଗଳ ଆଶିଷ—
ଅଧାରରେ କରୁ ସ୍ନାନ । ୩ ।

କଳିଙ୍ଗ ଭାରତୀ     ଭଣ୍ଡାର-ବିଭୂତି
ଯାହା ବର୍ଣ୍ଣେ କବି ଧନୀ
ଯାଙ୍କ ଚକ୍ରୋଟି କଣ୍ଠ     ଏକସ୍ବରେ ଜପୁ
ଜୟ ମା ବୀର ଜନନୀ । ୪ । ✱

୧୯୩୭



## ପ୍ରାର୍ଥନା ✱

( ଗୋପାଳ କୃଷ୍ଣଙ୍କ 'ଦୟା ନ କରନ୍ତୁ ମୁଁ ଦାସୀ ସିନା' ବୃତ୍ତରେ )

ଉରେ ଜଡ଼ାଇ ଧରିଥାନ୍ତ ସିନା ହେ । ଘୋଷା ।

ପୟ ଗଳିବା ପାଇଁ     ଫାଙ୍କ ତ ଥାନ୍ତା ନାହିଁ
କହ ଭଲ କାହିଁକି ଅକରୁଣା । ୧ ।

ନାଚେଇ ଉରେ ମୋର     କେତେ କେତେ ଯୁଗର
ବାସନା ତୃଷ୍ଣା ବିନା ଅପୂରଣା । ୨ ।

---

* ଏହା ଉତ୍କଳ ସାହିତ୍ୟ ସମାଜର ୧୯୩୭ ମସିହାର ବାର୍ଷିକୋତ୍ସବର ଶେଷ ସଙ୍ଗୀତରୂପେ ଓ ଅନ୍ୟାନ୍ୟ ବହୁ ସାରସ୍ବତ ଉତ୍ସବର ଶେଷ ସଙ୍ଗୀତ ରୂପେ ଗାନ ହୋଇଅଛି ।



୦ । ଉର--ହୃଦ; ଜଡ଼ାଇ--ଜାବି । ୧ । ପୟ--ପାଣି; ଅକରୁଣା ଦୟାର ଅଭାବ । ୨ । ଅପୂରଣା--ସାର୍ଥ ହୋଇ ନ ଥିବା ।

ପରାଣପାଖି ! ଦୂରେ ରହ, ଝୁରି ମୁଁ ମରେଁ;
ଯଥା ଧାଉଆ ଏଣୀ ଗଣବଣା । ୩ ।
ଦଣ୍ଡେ ଦଣ୍ଡେ ଦିଶୁଛ ପାଖେ ତ ନ ଆସୁଛ
ଦୀନା ନଳିନୀ ମଧୁଲିଟ ବିନା । ୪ ।
ପୂଜାଡ଼ାଲି ମୋହର ହେଲାଣି ନାରଖାର
ଲୁହ-ସୁଏ ଭାସିଲି ରଖ କନା । ୫ ।

୧୯୩୮



—୯—

# ବିଶ୍ୱକବି ରବୀନ୍ଦ୍ରନାଥ *

( ୧ )

( ଶ୍ରୀରାଧା ବାତୁଳ ପ୍ରେମରତ୍ନତୁଳ ବୃତ୍ତରେ )

ପ୍ରାଚୀ-ଭାଲ-ଟୀକା ତାରୁଣ୍ୟ-ସୁରେଧା
ଅଟହ ସାର୍ବଭୌମ କବିବର !
ଭାରତ-ଗୌରବ-ଶିଖର-ମଣ୍ଡଳ !
ଧନ୍ୟ ହେଲା ଧରା ଏ ଅମ୍ବର;
ତୁମ୍ଭ ପଦ ଛୁଇଁ
ତୁମ୍ଭର କଲ୍ୟାମୋଦ ପାଇ
ଜଡ଼ତା-ଶିଶିର ହତ ହେଲା ତାର
ବରଦ ହେ ଚଳେ ଚରେ ଦେବ ।

୩ । ଧାଉଆ—ଅଦ୍ଭୁତ ହୋଇ ଥିବା; ଏଣୀ—ହରିଣୀ; ଗଣବଣା—ଗୋଠରୁ ଖସି ଯାଇଥିବା । ୪ । ମଧୁଲିଟ—ଭ୍ରମର ।



* ଏହା ଉତ୍କଳ ସାହିତ୍ୟ ସମାଜ ଓ ବଂଗୀୟ ସାହିତ୍ୟ ପରିଷଦଙ୍କ ସମ୍ମିଳିତ ବାର୍ଷିକ ରବୀନ୍ଦ୍ର ଶ୍ରାଦ୍ଧ ସଭାରେ ବହୁବାର ଗାନ ହୋଇଅଛି ।

ସୁରତର-ମାଧବ-ମାଧୁରୀ-ଜାହ୍ନବୀ
ଭଗୀରଥ ହୋଇ ଥିଲ ଆଣି,
ଚିର-ତରୁଣ ହେ ! ଅଦରଶ ତୁମ୍ଭ
ହେଲା ମୃତ-ଧରା-ସଞ୍ଜୀବନୀ,
ଭସ୍ମ ଅଙ୍କୁରିଲା,
ମରଣେ ଜୀବନ ଭରିଗଲା,
ଶିଶିର-ହତ-ପଲ୍ଲବ ତରୁ-ଗାତ୍ର
ଶ୍ୟାମ-ଅଇଶ୍ୱର୍ଯ୍ୟେ ପୁଲକିଲା ।

ବିଶ୍ୱ-ଜନ-ହୃଦ-ମରାଳୀ ନାଚିଲା
ତୁମ୍ଭ ରଚନାର ବୀଚିଘାତେ
କଞ୍ଜ-ବନ କବିତାର ଫୁଟାଇଲ
ଭୂଭାରତେ କମ୍ର ରଶ୍ମିପାତେ,
ଅଦ୍ୟେ ମୂରସ୍ବରୁ !
ଅବତର ଅସ ସୁରପୁରୁ !
ଭାରତ-ହୃଦ-କୁମୁଦ-ପ୍ରକାଶକ !
ପଥ ଚୂହିଁ ଅଛୁଁ ପରା ଦୂରୁଁ ।

---

ପ୍ରାଚୀ—ପ୍ରାଚ୍ୟ ଖଣ୍ଡ; ଭାଲ—କପାଳ; ଟୀକା—ଚିତା; ତାରୁଣ୍ୟ-ପୁରୋଧା ଅମରଣ ଯୁବ-ମନୋଭାବ ରକ୍ଷା କରିବାର ପକ୍ଷପାତୀ, ସାର୍ବଭୌମ କବି—ବିଶ୍ୱକବି, ଶିଖରୀ—ପର୍ବତ ମଉଳ-ମୌଳି ଶିଖର, ମଲୟାମୋଦ—ମଳୟ ପବନର ସୁଗନ୍ଧ, ଜଡ଼ତା—ଶିଶିର—କଷ୍ଟେଷ୍ଟତା ରୂପକ ଶୀତକାଳ ।

କାଦମ୍ବିନୀ-ଶାଢ଼ୀ ବକାଳି-ମାଳିକା
ପ୍ରାବୃଟର ଏହୁ ନବସାଜ
କରି ପରିଧାନ ଉଲ୍ଲସିତ ମନ
ଉତ୍କଳ ଅବନୀ ପରି ଆଜ
ତୁମ୍ଭ ଆଗମନେ
'ସାହିତ୍ୟ ସମାଜ ଅର୍ଘ୍ୟ ଦାନେ'
କୋଣାର୍କ-ପଥର-ଅବଳା-ବଦନେ
ବନାଏ ଏ ସ୍ମୃତି ପୂଜା ଧନେ ।

୧୯୩୬

—୧୦—

## ରତ୍ନମାଳା ପାଖରୁ ମାଧବ *

ରାଗ—ଆହାରୀ

('କୃଷ୍ଣଙ୍କର ଗମନ ଦେଖି ଛନ ଛନ ହୋଇ ସକଳ ଗୋପାଙ୍ଗନା', ବୃତ୍ତ)

ପାଇଛୁ ପତ୍ର କି ଦେବ ଉତ୍ତର କରେଁ ନିରନ୍ତର ଭାବନା
ସଂଶୟ ସୁଝୁଇ ଲେଖିଛୁ ଯା ତୁହି ଚକ୍ଷେ ସହୁଛି ତା ଯାତନା
ରଞ୍ଜନା ! କେଉଁଠୁ ଶିଖିଲୁ ଏ ରୀତି
ଜାଣୁ ନାହିଁ କି ନର ଗାତ ମୀନଙ୍କ ସଂଶୟ ଯେ ଅନନ୍ତ ଅଗାଧ ।୧।

* ସୁଚିର—ଚିରସ୍ଥାୟୀ, ମାଧବ—( ମଧୁ+ଅ )—ବାସନ୍ତୀ, ଜାହ୍ନବୀ—ଗଙ୍ଗା; ଭସ୍ମ—ପାଉଁଶ; ଶିଶିର-ହୃତ-ପଲ୍ଲବ—ଶୀତକାଳ ଯୋଗୁଁ ପତ୍ରଝଡ଼ା ଦେଇଥିବା, ଶ୍ୟାମ-ଐଶ୍ୱର୍ଯ୍ୟ—ପତ୍ର ବଭବରେ ।

୩ । ମରାଳୀ—ହଂସୀ, ବୀଚି—ତରଙ୍ଗ, କଞ୍ଜବନ—ପଦ୍ମବନ କମ୍ର—କମନୀୟ, ସୂରି—ବଙ୍କବର ।

୪ । କାଦମ୍ବିନୀ—ମେଘ, ଶାଢ଼ୀ—ଶାଢ଼ୀ, ବକାଳି—ବଗ ।

୧ । ସଂଶୟ—ସନ୍ଦେହ; ଯାତନା—କଷ୍ଟ; ଅବାଧ—ଶତ୍ରୁ ।

ରତ୍ନଚୀରତୀରେ ବାଲି ଖେଳ ଖେଳୁଁ ତୋର ମୋର ପଣ ପୀରତି,
ଭୁଲି ଗଲୁକି ରେ ! ବାଲିଘରେ ତୁହି କାନ୍ତା ସାଜୁ ମୁହିଁ ତୋ ପତି,
ରତନ ! ବାଲିରେ ବନାଉଁ ଅଶନ,
ଚମ୍ପା-ଅଙ୍ଗୁଳିରେ ପରଷି ତା ପୁଣି କରାଉ ଟି ମୋତେ ଭୋଜନ ।୨।

ବାଲିଭାତ ଦନେ ମିଛେ ଗଲା ପୋଡ଼ି ମିଛେ ମୁଁ ମାରନ୍ତେ ଗୁପୁଡ଼ା,
ଶଶିଖଣ୍ଡ-ଗଣ୍ଡେ ହୋଇଗଲା ଅଙ୍କି ମୋ ଅଙ୍ଗୁଳିର ନୋଳା ଯୋଡ଼ା,
ରତନ ! ତୁ କାନ୍ଦବାର ଅଗୁଁ ମୋର
ଆଖିରୁ ଝଡ଼ନ୍ତେ ଲୁହଧାର ଦେଖି ଦାହ କର ଦେଲି ପଥର ।୩।

ବୋଉ ପଶୁରନ୍ତେ ଗାଲ କାସ ହେଲା ବୋଇଲି ପଡ଼ିଗଲି ମୁହିଁ,
ପଥରେ ଲାଗିଲା ଆଘାତ ମାଧବ ଧଇଲା ମୋତେ ଉଠାଇ
ବୋଉ ଲୋ ! ମାଧବ ନ ଯାଉ ତା ଘରେ
ଆମ ଘରେ ରହୁ, ଆମ ଘରେ ଖାଉ, ଶୋଉ ଆମ ଖଟ ଉପରେ ।୪।

ଧୂଳି ଖେଳ ବେଳ ସରିଗଲା ବେଗେ ହୋଇଲୁ ତୁହୁ ଏକାଦଶୀ,
ଗଲା ନୂଆ ଫୁଲ ଅଙ୍ଗରେ ଟେକା ଖେଳା ଲାଜରେ ପୂରି ଗଲୁ ଲସି,
ଏଣିକି ! ଗୁହିଁଲେ ନତ କର ମଥା
ଚୋଡ଼ ବୁଢ଼ା ଅଙ୍ଗୁଠିରେ ମହୀ ଟିରି ଲାଜବତେ କହୁଲୁ କଥା ।୫।

---

୨। ରତ୍ନଚୀର—ସାକ୍ଷୀଗୋପାଳ ପାଖର ନଦୀ, ଅଶନ—ଖାଦ୍ୟ ।
୩। ଶଶିଖଣ୍ଡ—ଚନ୍ଦ୍ରରୁ ଖଣ୍ଡକ ପରି ଉଜ୍ଜ୍ୱଳ; ନୋଳା—ଚନ୍ଦ୍ର ।
୫। ଏକାଦଶୀ—ଏଗାରବର୍ଷର ବାଳିକା; ଫୁଲ—ଅସ୍ତ୍ର ।

ଦିନେକ ପିକୁଳ ଡୋଲୁଥିଲ ମୁହିଁ ଗଛମୂଳେ ଥିଲୁ ଅନାଇଁ
ଦମକା ପବନ ବାଦ ସାଧି ତୋର ଝୀନବାସ ନେଲା ଉଡ଼ାଇ,
ରତନ ! ସୁନା ଖଣ୍ଡିକାର ସବୁ ରେ
ମତୁଆଲ କର ମନକୁ ମୋହର ଦଶିଲୁ ଶୋଭା-ବଲ୍ଲରୀ ରେ । ୬ ।

ଡାକନ୍ତେ 'ରତନ !' ସମ୍ଭାଳି ବସନ କହିଲୁ ଦୁଷ୍ଟାମି କାହିଁକି ?
ବୋଉ ତେଣେ ଅଛୁ ରମାକୁ, ଡାକୁଛୁ ପାଟି ତାର ଶୁଭୁ ନାହିଁ କି ?
ସେ ଦିନ; କାନ୍ନ ଧରି ମୋରେ ଟାଣିଲୁ
ବୋଉ ହାବୁଡ଼ରେ ପଡ଼ିଲି ମୋ ହୃଦ ଲାଜ କୁର୍‌ହାଡ଼ରେ
ହାଣିଲୁ । ୭ ।

ବୃତ୍ତି ପାଇ ଗାଁ ଅ ଛାଡ଼ି ଯେଉଁ ଦିନ ପୁରୀ ଗଲି ପଢ଼ା ପାଇଁକି
ଗାଡ଼ିଆ କୂଳର ଏକାନ୍ତ ମିଳନେ କି କାନ୍ଦ ତୋ ମନେ ନାହିଁ କି ?
ରତନ ! ପୋଥିଏ କଥା ତୁ ଲୁହରେ
କହିଗଲୁ ମୋର କଣ୍ଠ ନ ଫିଟିଲା ଜଡ଼ୀଭୂତ ହୋଇ କୋହରେ । ୮ ।

ଲୁହ, କୋହ, ଯେତେ କଥା କହନ୍ତି ରେ, ରସନା ନ ପାରେ ବଖାଣି
ଅନୁଭବରୁ ସେ ଦିନୁଁ ଥାଇଁ ଜାଣି, ଅହା ରେ ମୋର ହୃଦମଣି !
ରତନ ! ଶଠିରେ ବନାଇଁ ଚୂନାଇଁ,
ଯେତେ ଯା ଲେଖିଲେ ଲୁହ କୋହ ସବୁ କଥା କି ତହିଁରେ ଫିଟଇ । ୯

---

୬ । ବଲ୍ଲରୀ—ଲତିକା ।
୮ । ପୋଥିଏ କଥା—ଯେଉଁ ସବୁ କଥାକୁ ଲେଖିଲେ ବହିଟାଏ ହେବ ।
୯ । ରସନା—ଜିଭ ।

ଛୁଟିରେ ମୁଁ ଯାଏଁ ଯେବେ ଥର ଗାଁଅ ଜୀବନ ହୁଏ ମୋ ମଧୁର,
ତୋ ଦୁଇ ସଜଳ କଜଳ ଆଖିର ଭାବନା ମୋ ପ୍ରାଣ-ଆହାର,
ରତନ ! ଦିନ-ଚିନ୍ତା ରାତି-ସପନ,
ତୋରେ କରି ପାଠେ ନିବେଶଇ ମନ ତୁ ମୋର
ନାସାରେ ପବନ । ୧୦ ।

ଦେଶ ବିଦେଶର ହାଟକ-ବରନା ଦେଖି ମୁଁ ଶିଖରେ ଭାଳଇ
ନାହିଁ ଏକ ଜଣ ରତନ-ଚରଣ-ଘଷା-ପଥର ସମ ହୋଇ,
ମୋ ଧନ ! ପଲ୍ଲୀ-ସରସୀରେ ବିରଞ୍ଚି
କନକ-କମଳ ରୂପେ ଫୁଟାଇଛି ତୋତେ ମୋ ପାଇଁ ଅଛି ସଞ୍ଚି ।୧୧

ଫଗୁ ପଠାଇଲୁ ଦୋଳ ପୂର୍ଣ୍ଣମୀରେ ରମା ହାତେ ମୋର କତକ,
କ୍ଷଣକେ ଚିତ୍ତେ ମୋ ଲଗାଇ ଦେଲୁ ତା ଅଶେଷ ଆନନ୍ଦବର୍ତ୍ତିକା
ରତନ ! ଭାଳିଲି ସତେ କି ମୋ କର
ଫଗୁରେ ତୋ ଅଙ୍ଗ ମଣ୍ଡଣି କରିବା ଭାଗ୍ୟେ ଲଭିବ ଅଧିକାର ।୧୨

ସାକ୍ଷୀଗୋପାଳଙ୍କ ଦରଶନ ପାଇଁ ଯାଇଥିଲୁ ତୁହି ସଙ୍ଗରେ,
ଲୁଚି ମୁହିଁ ତମ ପିନ୍ଧୁ ଧରିଥିଲି ଗଭା ଛୁଇଁ ତୋର ଖଞ୍ଜରେ,
ରତନ ! ଚମ୍ପାଫୁଲ କରୁଁ ଅନ୍ତର
ବଦନ-କମଳ ଫୁଲିର ହସିଲୁ ଲାଜରେ ହୋଇ ଜରଜର ।୧୩ ।

---

୧୦ । ଦିନଚିନ୍ତା ରାତିସପନ—ତୋ କଥା ମୁଁ ଦିନଯାକ ଚିନ୍ତାକରେ; ରାତିଯାକ ସପନ ଦେଖେ; ନିବେଶଇ ମନ— ମନ ଦିଏ; ନାସାରେ ପବନ—ପ୍ରାଣବାୟୁ ।
୧୧ । ହାଟକବରନା—ସୁନାବରଣୀ ସ୍ତ୍ରୀ; ବିରଞ୍ଚି—ବିଧାତା; କନକ କମଳ-ସୁନାର ପଦ୍ମ ।

ପ୍ରଭାତ ଭ୍ରମଣେ ଯାଇଁ ମୁଁ ଦେଖିଲି ଗାଡ଼ିଆ କଡ଼ କଞ୍ଜବନ
ସମବୟସୀଙ୍କ ଗହଣେ ରୂପସି ! ରହିଅଛୁ ତୁହି ସ୍ନାହାନ
ରତନ ! ଜଳରେ ତୁ ହସମୁଖୁଡା,
ଭୁଣି ଦେଇ ମୋହ ମୁଖେ ଯା ଲୁହିଁଲି ଶତେ ଲାଜେ ଅଙ୍ଗ ଛନ୍ଦି ତା ।

କଳାମେଘୀ ଶାଢ଼ୀ ପିନ୍ଧି ତୁ ରତନ ଗୀତ ଗାଉଥିଲୁ ବାଡ଼ରେ
ତୋହ ଶୋଭା ଦେଖି କୁଆଁର ପୂନଅଁ ଉହ୍ନା ଦେଲା ମନ ମାଡ଼ରେ
ଷୋଡ଼ଶି ! ଝରକା ମୁଁ ମେଲି କରି ରେ
ଗୋଡ଼ଟିଏ ଛାଡ଼ି ଦଅନ୍ତେ ଭୁଲିଲି ମୁଁ ଦୁଃସାହସୀ ଶିକାରୀ ରେ ।୧୫।

ସଖୀଙ୍କୁ ଭୁଲାଇ ଝରକା ଫାଙ୍କାଇ ଅଣିବାକୁ ଆସି ନିକଟ
ଦେଉଛୁ ଚମ୍ପକ-ଦାମ ଫିଙ୍ଗିଗଲୁ ମୁଁ ଧରି ନେଇଁ ତୋହ ହାତ
ରତନ ! ସେ ଦାମର ଦାମ କେ ଦେବ ?
ଯେ ଏକା ପାଇବ ମୋହ ପରି କେହୁ ଯେବେ ପୂଜିବ ସଦାଶିବ ।୧୬

ତୋର ମୋର ସତ୍ତ୍ୱ ! ହୋଇଛୁ ମିଳନ ବେନିଏଁ ଆମେ ବେନିଙ୍କର
ମନର ମିଳନ ମିଳନରେ ଲେଖା ଦେହ-ମେଳ ବଶ ତହିଁର
ରତନ ! ବୋଉ କହେ ତୁହି ରତନ,
ଯାହା ଘରେ ଯିବୁ ତା ଘର ମନ୍ଦିରୁ ତୋହ ସରି କିଏ ଯତନ । ୧୭

---

୧୪ । କଞ୍ଜବନ—ପଦ୍ମବନ, ( ସମବୟସୀମାନଙ୍କ ମୁଖପଦ୍ମ ଦ୍ୱାରା )
୧୫ । କଳାମେଘୀଶାଢ଼ୀ—କଳାଶାଢ଼ୀ ।
୧୬ । ଦାମ—ମାଳା; ଦାମ—ମୂଲ୍ୟ ।
୧୭ । ଯତନ—ରୂପ ଗୁଣରେ ନିଖୁଣ ।

ଚିନ୍ତା ତୁ ନ କର ପାହାନ୍ତା ପହର ହେଲାଣି ବିଚ୍ଛେଦ-ନିଶିର,
ମିଳନ-ପ୍ରଭାତ ହେବ ଉପଗତ ଶୁଖିଯିବ ଶୋକ-ଶିଶିର
ରତନ ! ତୋଷ-ତାମରସ ଫୁଟିବ
ହୋଇ ପ୍ରମୋଦିତା 'ରତନ'-ବଲ୍ଲରୀ 'ମାଧବ' ତରୁରେ ଲେଟିବ ।

ଚିନ୍ତା ଉପେକ୍ଷିବୁ ଚିତା ତୁ ଜାଳିବୁ ବିଚ୍ଛେଦ-ଶବକୁ ଦହିବା
ପ୍ରେମର ଅମରାବତୀରେ-ବାନ୍ଧବ ଶଚୀ ଶଚୀପତି ହୋଇବା
ରତନ ! ଗୋବନ୍ଧା କରିହ ଦୃଢ଼ କର
ଅଯନ୍ତ୍ରା କୋଡ଼ଏ ତାରଖେ ପିନ୍ଧିବ ମୁହିଁ ସୀଭକାର-ଅଙ୍ଗୁରୀ ।୧୯

ଜାନଶୀ ଅବସ୍ଥ କରଦେବୁ ବୋଲି ଜଣା ନ ହୋଇଛୁ ତୋହରେ
ରତନବଲ୍ଲରୀ ଝାଞ୍ଜିଲ ପଡ଼ିବା ଯିବ ପୁଣି କାହା ଦେହରେ ?
ରତନ ! ଏଣିକି ଭାବନା ମୁଞ୍ଚିବୁ
ମୋ ଗାଢ଼ ଚୁମ୍ବନ ଅଭିଷେକ ପାଇଁ ଅଙ୍ଗେ ସିଂହାସନ ରଚିବୁ ।୨୦

କଏ ସେ କହିଲା ତୋ ଅଟେ ରତନ ! ଅନେ ମୋହ ମନ ମଜ୍ଜିଛୁ ?
ରଜସ୍ୱଳେଶ୍ୱର ! କୋଯୂରେ କୋପୁଛୁ ଏ ପୁଣ କି କଥା ଛୁ ଛୁ ଛୁ !
ରତନ ! ତୁ ମୋହର ମୁହିଁ ତୋହର
ଶଶାଙ୍କର ପଛେ କୁମୁଦ ନୋହିବ ରତନ-ମାଳା ମାଧବର । ୨୧ ।

୧୯୪୫



---

୮ । ତାମରସ—ପଦ୍ମ ।

୧୯ । ଚିତା-ଶବଦାହ କରିବାର ନିଆଁ ;ଅମରାବତୀ-ସ୍ୱର୍ଗ;ଶଚୀ-ଇନ୍ଦ୍ରଙ୍କ ପତ୍ନୀ; ଦେବରାଣୀ; ଗୋବନ୍ଧା—ବନମାଳାଙ୍କ ଘରର ଗୃହର; ସୀଉକାର-ଅଙ୍ଗୁରୀ-ବିଭାଗର ଅଗରୁ କନ୍ୟାପକ୍ଷରୁ ସ୍ୱୀକାରର ଯେଉଁ ମୁଦି ଅସେ ।

୨୧ । ଶଶାଙ୍କ—ଚନ୍ଦ୍ର ।



—୧୧—

# ତୁମ୍ଭେ ଓ ମୁଁ

[ ରାଗ—ବଙ୍ଗଳାଶ୍ରୀ ]

ତୁମ୍ଭେ ମହାପ୍ରଭୁ ! ଅନନ୍ତ ଗଗନ
କ୍ଷୁଦ୍ର ତାରକା ମୁଁ ତହିଁ,
ତୁମ୍ଭେ ମହାପ୍ରଭୁ ! ସୀମାହୀନ ସିନ୍ଧୁ,
ବିନ୍ଦୁ ମୁଁ ତହିଁ ବୋଲଇ । ୧ ।
ତୁମ୍ଭେ ବେଗବତୀ ଚିତ୍ରୋତ୍ପଳା ନାଥ !
ମୁଁ ତହିଁ ବୁଦ୍‌ବୁଦ ହୀନ
ତୁମ୍ଭେ ନାଥ ! ସ୍ୱଚ୍ଛ ଚିଲିକାର ଅମ୍ବୁ
ମୁଁ ତହିଁ ନଗଣ୍ୟ ମୀନ । ୨ ।
ତୁମ୍ଭେ ଶୋଭାମୟ ଋତୁରାଜ ପ୍ରଭୁ !
ମୁଁ ସାମାନ୍ୟ ଫୁଲକଳି,
ତୁମ୍ଭେ ଶ୍ରାନ୍ତିହର ମଳୟ ସମୀର
ମୁଁ ପର ପରାଗ ଧୂଳି । ୩ ।
ଅଖିଳ ବ୍ରହ୍ମାଣ୍ଡ— ନାଥ ତୁମ୍ଭେ ନାଥ !
ମୁଁ ତୁମ୍ଭ ଦାସର ଦାସ,
ତୁମ୍ଭେ ଚତୁର୍ବର୍ଗ— ଦାତା ମୁଁ ଭିକାରୀ
ଜାଣିଛ ରାଜରାଜେଶ । ୪ ।

---

୨ । ଚିତ୍ରୋତ୍ପଳା—ମହାନଦୀ; ଅମ୍ବୁ—ଜଳ; ମୀନ—ମାଛ ।
୩ । ଋତୁରାଜ—ବସନ୍ତ ।
୪ । ଚତୁର୍ବର୍ଗଦାତା—ଧର୍ମ, ଅର୍ଥ, କାମ ଓ ମୋକ୍ଷ ଦାନକାରୀ ।

ପତିତପାବନ ତୁମ୍ଭେ ମହାପ୍ରଭୁ !
ପତିତ ଜନେ ମୁଁ ସାର,
ଦୀନ ଜନଙ୍କର ଚିନ୍ତାମଣି ତୁମ୍ଭେ,
ଦୀନଜନେ ମୁହିଁ ବର । ୫ ।
ମୋ ହୃଦୟ ମରୁ ମନ୍ଦାକିନୀ ତୁମ୍ଭେ,
ଚିତ୍ତ-ଚକୋର-ଚନ୍ଦ୍ରମା,
ଜୀବନ ଗଗନେ ଉଇଁ ଅସ ମୋର
ବିନାଶି କଳୁଷ-ଅମା । ୬ ।
କଣ୍ଠେ ହାର କର ଉରେ ମୁଁ ବହିବ
ନାଶିବ ବେଦନା ସବୁ
ପଦ ଧୂଳି ତୁମ୍ଭ ନଉକା କରଣ
ତରିଯିବି ହେଲେ ଭବୁଁ । ୬ ।

୧୯୩୯

—୧୨—

## ବିଶ୍ୱକବି ରବୀନ୍ଦ୍ରନାଥ *

ଅସ ରବୀନ୍ଦ୍ର ! ଅଜ କ୍ଷିତକି ହେ
ଉଲସାଇ ଉତ୍କଳ-ମଣ୍ଡଳ ହେ । ଘୋଷା ।
ଅପସାର ଆତପ, ବାରିଦ ଚନ୍ଦ୍ରାତପ,
ଟାଣି ଧରନ୍ତୁ ନୂଆ ଗୀତ କି ହେ ।୧ ।

---

୫ । ବର—ଶ୍ରେଷ୍ଠ । ୬ । ମନ୍ଦାକିନୀ--ଗଙ୍ଗା; ଅମା—ଅମାବସ୍ୟା ।

* ଉତ୍କଳ ସାହିତ୍ୟ ସମାଜ ଓ ବଙ୍ଗୀୟ ସାହିତ୍ୟ ପରିଷଦଙ୍କ ସମ୍ମିଳିତ ରବୀନ୍ଦ୍ର ଶ୍ରାଦ୍ଧ ଉତ୍ସବରେ ଏ ଗୀତ ଗାନ ହୋଇଥିଲା ।

୦ । କ୍ଷିତି—ପୃଥିବୀ, ଉଲସାଇ—ଆନନ୍ଦିତ କର ।

ପାରୁଛୁ ବିମୋହନ, ଶ୍ୟାମ ଦୂବା ଅସନ,
ଖଞ୍ଜାଇ ଇନ୍ଦ୍ରଗୋପ-ପନ୍ତିକ ହେ । ୨ ।

ଫୁଟାଇ ନୀପସୁମ, ରଟାଇ କେକା ରମ,
ତା ଛଳେ ଡାକେ ଅସ କଉକ ହେ ।୩।

ହେ ସୁଷମା-ବିଳାସି ! ଶୋଭା ସମ୍ଭାରେ ରସି,
ଫୋଟାଇ ଉଠେ ଅଭ୍ର-ଛତକ ହେ ।୪।

ନିର୍ମୋକ ଅନ୍ତିତର, କର ଅଙ୍ଗରୁ ଦୂର,
ଧରେ ଜଗତ ନୂଆ ଦ୍ୟୁତକ ହେ ।୫।

ପ୍ରବୋଧା ନବୀନର, ପ୍ରାଚୀନ ନିଶା ଘୋର,
ପ୍ରଭାତୁଛୁ ଫୁଟାଇ ଜ୍ୟୋତକ ହେ । ୬ ।

ବିଶ୍ୱ-ଭାରତୀ ବୀଣା— ବାଦନ-ହୃଷ୍ଟମନା
କର ରଞ୍ଜନ ବିଶ୍ୱ ଶ୍ରୁତକ ହେ । ୭ ।

ତୁମ୍ଭର ପ୍ରୟୋଜନ— ଅଛଇ କବିରାଣ !
ଏ ବାସରେ ଜଣାଉଁ ଏତକ ହେ । ୮ ।

୧୯୪୨



---

୧ । ଅପସାର—ଦୂରକର, ଚନ୍ଦ୍ରାତପ—ଚାନ୍ଦୁଆ ।
୨ । ଇନ୍ଦ୍ରଗୋପ—ସାଧବବୋହୂ ପୋକ ।
୩ । ନୀପସୁମ—କଦମ୍ବଫୁଲ, କେକା—ମୟୂର ଡାକ, ରମ—ମନୋହର ।
୪ । ନିର୍ମୋକ—ଖୋଳ, କାତି ।
୭ । କର ରଞ୍ଜନ—ମୁଗ୍ଧ କର, ଶ୍ରୁତ—କାନ ।
୮ । କବିରାଣ—କବିଶ୍ରେଷ୍ଠ, ବାସର—ଦିନ ।



—୧୩—

# ମା ! କରୁଣା ନାହିଁ କି ?

( ୰ ଗୋପାଳ କୃଷ୍ଣଙ୍କ "ସନ୍ଧ୍ୟା ! ଅଣ୍ଟିଲ ନାହିଁକି"—ବୃତ୍ତରେ )

ମା ! କରୁଣା ନାହିଁକି ?
ତବ ପୂଜନ-ପୂତ ଭୂଇଁ କି ? । ଘୋଷା ।
କବି-କଞ୍ଜବନ ଭଞ୍ଜ-ଦେଶରେ ମା !
ମୂକ କାହିଁକି ବଲ୍ଲକୀ ?
କୃପା-ସୁଧା-ସିକ୍ତ ଡାଳ ଯୁଗେ ଯୁଗେ
ଚିହ୍ନା ସତେ ପାଇଲ କି ।୧।
ଭକତ-ପୀରତି— ସୁମନସ-ଦାମ
ଗଳା-ଭୂଷଣ ପାଇଁ କି
କବି-ମାଳାକର ଦେଲେ ଯା ଏ ଦେଶେ
କାହିଁ ସମାନ ତହିଁ କି ? ।୨।

---

ଏହା ବହୁବାର ଉତ୍କଳ ସାହିତ୍ୟ ସମାଜର ସାରସ୍ୱତ ଉତ୍ସବ-ମାନଙ୍କରେ ଗାନ ହୋଇଅଛି ।

୦ । ତବ ପୂଜନ-ପୂତ—ତୁମ୍ଭ ପୂଜାଦ୍ୱାରା ପବିତ୍ର ।

୧ । କବି-କଞ୍ଜ-ବନ—କବିରୂପକ ପଦ୍ମର ବନ; ଭଞ୍ଜଦେଶ—ମହାକବି ଉପେନ୍ଦ୍ରଭଞ୍ଜଙ୍କ ଦେଶ; ବଲ୍‌ଲକୀ—ବୀଣା, କୃପା-ସୁଧା-ସିକ୍ତ—ଦୟା-ରୂପକ ଅମୃତରେ ଭିଜିଥିବା ଗଛ, ଚିହ୍ନାପାଇଲ—ଚକ୍‌ଦାର ହେଲ ।

୨ । ସୁମନସ—ଫୁଲ, ଦାମ—ମାଳା, ମାଳାକର—ମାଳୀ, ଏ ଦେଶର କବିମାନେ ଭକ୍ତି ଓ ପ୍ରୀତିମୂଳକ ଯେଉଁସବୁ କବିତା ଲେଖିଛନ୍ତି ତହିଁର ତୁଳନା ନାହିଁ ।

ବିଶ୍ୱେ ଉଠେ ରବ ଓଡ଼ିଆ ବିଭବ—
ହୀନ; କେ ପାରିବ ଦେଖ ?
ପର ରସନାରେ; ନ ଉଠିଲେ ତେବେ
ରତନ ତାର ଝଲକ ।୩।

ବିଶ୍ୱ-ହୃଦ-ତନ୍ତ୍ରୀ— ନବୀନ ସଙ୍ଗୀତ
ଗାନେ ମା ! ଓଡ଼ିଶା ଭେକ
ନବଯୁଗ-ଗନ୍ଧ୍ୱା ଅଗମେ ତା କରେ
ନ ଦେଲ ମଞ୍ଜୁଳ ରାକ୍ଷୀ । ୪ ।

ଛନ୍ଦ-ରସ-ରାଜ୍ୟ ଲୁଟିଛି ଅତୀତେ
ରଖି ନାହିଁ କିଛି ବାକୀ
ନବଯୁଗ-ସିନ୍ଧୁ— ମନ୍ଥନ-ଅମୃତ—
ଲାଳସୀ; ନାହିଁ ତା ସୁଖି ।୫।

---

୩ । ରବ—ଚହଲ, ବିଭବ—ସମ୍ପଦ, ପର ରସନାରେ କେ ପାରିବ ଦେଖି—ପର ପାଟିରେ କିଏ କଥା ଦେବ ? ନ ଉଠିଲେ···ଝଲକ ତା ପ୍ରାଚୀନ ସାହିତ୍ୟର ଗୌରବ ପ୍ରକଟିତ ନ ହେଲେ । ବିଶ୍ୱହୃଦ··· ଭେକ—ବିଶ୍ୱ ହୃଦୟକୁ କମ୍ପାଇଲା ଭଳି ନୂଆ ସଂଗୀତ ଗାଇବାକୁ ଓଡ଼ିଶା ଆଗ୍ରହୀ, ନବଯୁଗ-ଗନ୍ଧ୍ୱା—ନବଯୁଗ ରୂପକ ଗନ୍ଧ୍ୱାପୂର୍ଣ୍ଣିମା ଆସିଲା କିନ୍ତୁ ମା ଭଗବତି ! ତୁମ୍ଭେ ଓଡ଼ିଶା ହାତରେ ସୁନ୍ଦର ରାକ୍ଷୀ ପିନ୍ଧାଇ ଦେଲ ନାହିଁ; ଅର୍ଥାତ୍ ଓଡ଼ିଶା ଆଧୁନିକ ଯୁଗରେ ତା କବିତା ଦେଇ ଯଶସ୍ୱୀ ହୋଇପାରିଲା ନାହିଁ ।

୪ । ଓଡ଼ିଶା ଅତୀତ ଯୁଗରେ ଅଗଣିତ ଛନ୍ଦରେ ବହୁତ ରସ କବିତା ଲେଖିଛି; ସେ ଦିଗରେ ତାର ଲେଖିବା କମନ୍ତେ ଆଉ କିଛି ବାକୀ ନାହିଁ । କିନ୍ତୁ ନବୀନ ଯୁଗରେ ଓଡ଼ିଶା ଉନ୍ନତ କବିତା ଲେଖି ନାହିଁ, ସେଥିପାଇଁ ଆଗ୍ରହୀ ଅଛି ।

ବିଚ୍ଛିନ୍ନ-ଭୂଷିତ ଭଞ୍ଜ-ଗରବିତ—
ଦେଶ-ଅତୀତ-ଅର୍ଣିକ
ରଖିବ କି ଅବା ଛାଡ଼ିବ ମଉନେ
ନୟନୁ ଢାଳ ପାଣିକି ? ୭ ।

୧୯୪୫



—୧୪—

## ପ୍ରମଦା-ଜୟନ୍ତ

( ରାଗ ବଙ୍ଗଳାଶ୍ରୀ )

"ଉଛୁର ନ କର ନାଉରି ଭାଇରେ !
ନେଏ ମୁ ନେବାରି ଯାହା
ଖଳ ଖଳ ଖଳ ଗରଜେ ନଈ ରେ !
ବାହି ଅଣ ବେଗେ ନାହା" ।୧।

"କିଏ ଅବଧାନ ; ଅଟ ହେ ଆପଣ !
ବହୁତୁ ଦେଖୁଛ ନଈ
ପଛିମ ଆକାଶ କଳାଘୂମର ହେ
ଝଡ଼ ଆସେ ପରା ବହି" ।୨।

୭ । ଭଞ୍ଜ-ଗରବିତ-ଦେଶ—ଉପେନ୍ଦ୍ରଭଞ୍ଜଙ୍କ ପ୍ରତିଭା ଯେଉଁ ଗର୍ବ କରୁଥିବା ଓଡ଼ିଶା, ଅର୍ଣି—ଗୌରବ, ଠେକ ।



ଇଂରାଜ କବି ଟି, କ୍ୟାମ୍ପବେଲ୍‌ଙ୍କ "ଲର୍ଡ଼ ଉଲିନ୍ସ ଡଟର" ନାମକ କବିତାର ଏହା ଓଡ଼ିଆ ସଂସ୍କରଣ ।

୨ । କଳାଘୂମର—କଳାହାଣ୍ଡିଆ ମେଘରେ ଢଙ୍କା ।

"ଖୋରଧାର ସାନ- ଦେଓ ମୁଁ ନାଉର !
ଏ ଯେ ବାଣପୁର-ଢେମା
ପ୍ରାଣ ଘେନି ତୁହେଁ ପଳାଇ ଲୋଡ଼ୁଛୁ
ପ୍ରିୟତମ ପ୍ରିୟତମା । ୩ ।

ସଇନ ଗହଣେ ଘୋଡ଼ା ଝଂପଟାଇ
ନାଜେ ବାଣପୁର-ପତି
ତନଦନ ହେଲା ଅଛନ୍ତି ଗୋଡ଼ାଇ
କରି କୋପାନଳ-ମତି । ୪ ।

ରକତ-ଶତା ମୋ ଘେନିବେ ଫରି ସେ
ପଡ଼ିବ ଯେବେ ମୁଁ ଧରି
ରେ ଭାଇ ନାଉର ! କର ନା ତୁ ଡେରି
କର ନା ମହତସରି । ୫ ।

ଘୋଡ଼ା ଟାପୁ ନାଦେ ମେଦନୀ କମ୍ପୁଛୁ
ଶିର ମୋ ଲୋଟିଲେ ମହୀ
କହୁଣୀ ପିତୁଳା ଏ ବାଳା କୋମଳା
ଧଇ କି ପାରିବ ଦେହି" ।୬।

---

୩ । ସାନଦେଓ—ଯୁବରାଜଙ୍କ ତଳ ଭାଇ ।

୪ । କୋପାନଳ କରି ମତି—ରାଗରେ ଜଳି ।

୫ । ମହତସରି—ବେଜାଡ଼୍ ।

୬ । ମେଦନୀ କମ୍ପୁଛି—ମହୀ ଥୁଲ୍‌କୁଛି; ଦେହି—ଦେହ; ଧଇ...
ଦେହି—ବହି ପାରିବ କି ?

ଡର ନା ଡର ନା          କୁମର ମଣି ହେ !
ମୁଦ୍ଗର କରବ ପାର
ଲୋଡ଼ା ନାହିଁ ଧନ          ଅକୁଳ ମୋ ମନ
କେମାଙ୍କ ବିକଳ ହେବ । ୭ ।
ଫେଣ ଫିଙ୍ଗି ନଈ          ଲହଡ଼ା ମାରଇ
ତଥାପି ବାହୁବ ନାହା
ମନ ଧଏ ମନ୍ତ୍ରି          ନଖୁଁ ଶିଖ ଯାଏଁ
କମ୍ପୁଛନ୍ତି କେମା ଯାହା । ୮ ।
କହୁଁ କହୁଁ ଝଡ଼          ଅସିଲା ସେ ମାଡ଼ି
ଦବସେ ଘୋଟିଲା ତମ
ଫେଣର ପଗଡ଼ି          ପିନ୍ଧି ନଈପାଣି
ନାଚିଲା ପାଗଳ ସମ । ୯ ।
ମୁହଁକୁ ମୁହଁ ସେ          ନ ଦଶିଲ ଅଉ
ପ୍ରବଳେ ବହିଲା ବାଆ
ଏତକବେଳକୁ          ଘୋଡ଼ା ଠାପୁ ନାଦ
ଶୁଭିଲା ନିକଟେ ଅହା । ୧୦ ।
“ନାଭର ଭାଇ ! ରେ”          କହେ କେମାମଣି
“ଡୁବଟତ ବାହା ତୁ ନାହା
ମିଠା କଟୁବାଣୀ          ସହିବ ନାହିଁରେ
ଭଲ ଛନ୍ଦୁ ଝଡ଼ ବାଆ” । ୧୧ ।

---

୭ । ମୁଦ୍ଗର—ନିଷ୍ଠୁର; ହେରି—ଦେଖି ।
୮ । ନଖୁଁ ଶିଖଯାଏଁ—ଗୋଠାସୁଦ୍ଧା; ତମ—ଅନ୍ଧାର ।
୧୦ । ନାଦ—ଶବ୍ଦ ।
୧୧ । ଡୁବିଦେ—ଶାସ୍ତ୍ର ।

କୂଳ ଛାଡ଼ି ନାହା ନଈରେ ପଡ଼ିଲା
ବଳୀୟାର ହେଲା ଝଡ଼
ବିଧାତା ଲେଖନ କେ କରିବ ଆନ
ବଢ଼ିଲା ପାଣିର ତୋଡ଼ । ୧୨ ।

ଅଣ୍ଟେ ମାରି କାତ ବାହୁଲେ କି ହେବ
ଡଅଁରେ ପଡ଼ିଲା ନାହା
କୁନ୍ତୀ ତା ଅନାଇଁ ବାଣପୁର ସାଇଁ
ଶୋକେ କଲେ ଅହା ଅହା । ୧୩ ।

ଭୁଜେକ ବେଢ଼ାଇ ପ୍ରେମିକ ଗଳାରେ
ଆର ଭୁଜ ଟେକି ବାଳା
ନୀରବ କାତର ଡାକେ ଡାକୁଥିଲା
ରଖ କିଏ ଅଛୁ ଭଲା । ୧୪ ।

"ଫେରି ଆ ଫେରି ଆ ପ୍ରମଦା କୁମାରି !
ବୁଢ଼ା ମୁଁ ଚୋପିଲି ହୁଡ଼ି
ତୋ ଜୟନ୍ତ ହାତେ ଅରପିବା ତୋତେ
ଦେଖିବ ତୋ ମାମା ବୁଢ଼ୀ । ୧୫ ।

---

୧୨ । ତୋଡ଼—ବେଗ ।

୧୩ । ଅଣ୍ଟେ—ଜୋର୍ କରି, ଡଅଁର—ଜଳଭଉଁରୀ ।

୧୪ । ଟେକି—ଟେକି ।

୧୫ । ଚୋପିଲି—ବଗ ହେଲି; ହୁଡ଼ି—ଭୁଲ୍ କରି । ମାମା—ମାଆ (ରଜାଘର ଡାକ) ।

ଝାସିଲେ ରାଜନ !  କରୁ ଅକାରଣ
ହେଲା ଏ ଅବେଳ-ବାଣୀ
ନାହା ଗଲା ଜୁନ୍ଦ  ଫେଣ-ହସ ହସି
ଗରଜିଲା ନଈ-ପାଣି । ୧୭ ।

୧୯୫୪



—୧୫—

## ଉତ୍କଳ-କେଶରୀ ମଧୁସୂଦନ

( ରାଗ-କଳସା )

ମାନବେନ୍ଦ୍ର ! ଏ ଉତ୍କଳ ବହୁ ପୁଣ୍ୟଫଳେ
ସୁତ ତୁମ୍ଭ ସଦ ସିନା ଲଭିଥିଲା କୋଳେ
ଜାଗରଣ-ଭାଗୀରଥୀ ଭଗୀରଥ ହୋଇ
ଉତ୍କଳ-ମହୀକୁ ତୁମ୍ଭେ ଅଣିଲ ବୁହାଇ । ୧ ।

---

୧୭ । ଅବେଳ-ବାଣୀ—ଅସମୟର ଡାକ; ଫେଣ ହସ—ପାଣିର ଫେଣକୁ ନଦୀର ନଈର ହସ ବୋଲି କୁହା ଯାଇଛି ।



୧ । ମାନବେନ୍ଦ୍ର—ମନୁଷ୍ୟଶ୍ରେଷ୍ଠ; ଜାଗରଣ—ଭାଗୀରଥୀ···ବୁହାଇ—ଭଗୀରଥ ଗଙ୍ଗାକୁ ପୃଥିବୀକୁ ଅଣିଲା ପରି ତୁମ୍ଭେ ଉତ୍କଳକୁ ଜାଗରଣ ଅଣିଥିଲ ।

ମୂକ ଓଡ଼ିଆର ମୁଖେ ଦେଲ ତୁମ୍ଭେ ଭାଷା
ମୁଖର କରିଲ ଏ ଜାତିର ମୂକ ଆଶା
ଯାଦୁକର ସବୁ ତୁମ୍ଭେ ମୁକତି ମନ୍ତ୍ରରେ
ହେ ପୁରୁଷ-ସିଂହ ! ଜଗାଇଲ ତା ଅନ୍ତରେ । ୨ ।

ତୁମ୍ଭ ଯୋଗୁଁ ଭୂଭାରତେ ଲଭି ସ୍ୱତନ୍ତ୍ରତା
ଧନ୍ୟା ବୋଲି ଏତେ ଧନେ ହେଲା ସେ ଗଣିତା
ନ ଥିବାରୁ ତୁମ୍ଭେ ଅଜି ବିକ୍ରମ-କେଶରୀ !
ହୋଇ ଅଛୁଁ ଯୂଥପତିହୀନ ଯୂଥ ସରି । ୩ ।

ଅତୁଳ ତୁମ୍ଭର ମେଧା ଅତୁଳ ବାଗ୍ମିତା
ତୁମ୍ଭ ଅନ୍ତେ ଉତ୍କଳରେ ଦୁର୍ଲ୍ଲଭ ସିନା ତା
ତୁମ୍ଭ ସମ ମହାମାନବର ଜନ୍ମ ପାଇଁ
କିଏ ଜାଣେ କେତେ ଯୁଗ ଯିବ ଆଉ ବହି । ୪ ।

ରାଜ୍ୟ ଗୋଷ୍ଠୀଙ୍କର ତୁମ୍ଭେ ଅରଜି ବିଭବ
ଦେଶ ହିତ ପାଇଁ ତାହା ସାରିଲ ସରବ,
ଟଙ୍କା ଅଞ୍ଜୁଳାକୁ ତୁମ୍ଭେ ହେ ଜନନାୟକ !
ଧୂଳି ଅଞ୍ଜୁଳାରୁ ମଣି ନ ଥିଲ ଅଧିକ ।୫।

---

୨ । ମୁଖର···ଆଶା—ଏ ଜାତିର ଆଶାକୁ ତୁମ୍ଭେ ବଳିଷ୍ଠ ଭାଷାରେ ପ୍ରକାଶ କରିଥିଲ; ଯାଦୁକର—ମନ୍ତ୍ରୁଆ ।

୩ । ବିକ୍ରମକେଶରୀ—ସିଂହ ତୁଲ୍ୟ ପରାକ୍ରମୀ ।

୪ । ମେଧା—ପ୍ରତିଭା, ବୁଦ୍ଧି, ବାଗ୍ମିତା—ବାକ୍‌ଶକ୍ତି, ବାକ୍‌ପଟୁତା ।

ଏତେ଼ ବଡ଼ ହୃଦ ଏତେ଼ ମଥାର ସତ୍ୱତ
ଦୁର୍ଲ୍ଲଭ ଏ ଦେଶେ ପୁଣି ହୋଇବା ଏକତ,
ଉତ୍କଳ ବିଶାଳକୀର୍ତ୍ତି ଜାଣି ଏହା କାଁଧି
କରିଥିଲା ତୁମ୍ଭଙ୍କୁ ତା ଯୋଗ୍ୟ ପ୍ରତିନିଧି । ୭ ।

ତୁମ୍ଭ ସ୍ମୃତି ଏ ଉତ୍କଳେ ଜାହ୍ନବୀର ବାରି,
ତୁମ୍ଭ ନାମ ପୂଜ୍ୟ ପୁଣି କ୍ଷେତ୍ର ଧୂଳି ପରି,
ରହିବେ ଯାବତ ନଭେ ଶଶୀ ଦିବାକର
ମଧୁନାମ୍ନ ଝରୁଥିବ ମଧୁ ନିରନ୍ତର । ୨ ।

୧୯୩୯



---

୭ । ବିଶାଳକୀର୍ତ୍ତି—ଯାହାର କୀର୍ତ୍ତି ସବୁ ବଡ଼, କରିଥିଲା······
···ପ୍ରତିନିଧି—ସେପରି ଦେଶର ପ୍ରତିନିଧି ହେବାକୁ ବିଧାତା ତୁମ୍ଭକୁହିଁ ପ୍ରତିନିଧି କରି ବାଛିଥିଲା କାରଣ ତୁମ୍ଭର ହୃଦୟ ବଡ଼ ଓ ମସ୍ତିଷ୍କ ବଡ଼ ।

୨ । ଜାହ୍ନବୀର ବାରି—ଗଙ୍ଗାଜଳ ( ପରି ପବିତ୍ର ); କ୍ଷେତ୍ରଧୂଳି—ତୀର୍ଥ ସ୍ଥାନର ଧୂଳି [ ପରି ପୂଜ୍ୟ ]; ଝରୁଥିବ—ବହୁଥିବ ।



—୧୨—

# ଶସ୍ୟ ଶ୍ୟାମା

[ କହ କିଏ ପକାଇଲ ଶ୍ୟାମଲଠେ ଗୋ କି କପଟେ—ବୃନ୍ଦରେ ]

କେଉଁ ଭୂମି କହ ଭଲ ତୋହ ସମା
ଗୋ ଶସ୍ୟ ଶ୍ୟାମା । [ ଘୋଷା ]

ଉଲ୍ଲତରେ ବଙ୍ଗ-ସାଗର-ତରଙ୍ଗ
ଧୁଅଇ ଜନନି ! ତୋହ ଅଧମାଙ୍ଗ
ତରଣୀ-ବିଶାଳା ତୁହି ମା କଳିଙ୍ଗ !
କଳା-ଲକ୍ଷ୍ମୀ-ମନୋରମା ଗୋ । ୧ ।

ତରଙ୍ଗେ ଶାସିଣ ପରି ତୋ ସନ୍ତତି
ବସାଇଲେ ଉପନିବେଶ ପଙ୍କତି!
ବରୁଣ ବହିଲ ଅଙ୍କ ଶିର ପାତି
ନିଖିଳ-ବଣିଜ-ରମା ଗୋ । ୨ ।

---

ଉତ୍କଳ ସାହିତ୍ୟ ସମାଜର ବନ୍ଧୁ ସାରସ୍ୱତ ଉତ୍ସବରେ ଏ ଗୀତ ଗାନ ହୋଇଅଛି ।

୧ । ବଙ୍ଗସାଗର—ବଙ୍ଗୋପସାଗର; ଅଧମାଙ୍ଗ—ପାଦ, ତରଣୀବିଶାଳା—ଜାହାଜମାଳା ଯୋଗୁଁ ଅର୍ଥାତ ନୌ ବାଣିଜ୍ୟଯୋଗୁଁ ପ୍ରଧାନ; କଳାଲକ୍ଷ୍ମୀ ମନୋରମା—କଳାରୂପ ଲକ୍ଷ୍ମୀଙ୍କ ପ୍ରିୟ ( ଭୂମି ) ।

୨ । ତରଙ୍ଗେ ଶାସିଣ—ସମୁଦ୍ରକୁ ଅଧୀନ କରି, ଉପନିବେଶ ପଙ୍କତି—ବ୍ରହ୍ମଦେଶ ଓ ସମଗ୍ର ପୂର୍ବଭାରତୀୟ ଦ୍ୱୀପପୁଞ୍ଜ ( ସୁମାତ୍ରା, ଯାଭା, ବୋର୍ଣ୍ଣିଓ ଆଦି ) କଳିଙ୍ଗବାସୀମାନଙ୍କ ଉପନିବେଶ ଥିଲା—ଏସବୁକୁ ଘେନି କଳିଙ୍ଗର ବିରାଟ ଔପନିବେଶିକ ସାମ୍ରାଜ୍ୟ ଗଢ଼ାହୋଇ ଥିଲା । ବରୁଣ ଦେବତା କଳିଙ୍ଗର ବଚସ୍କର ଥିଲେ । ନିଖିଳ ବଣିଜ-ରମା—ସବୁ ପ୍ରକାର ବଣିଜ ଘେନି କଳିଙ୍ଗ ରମା ଅର୍ଥାତ ଲକ୍ଷ୍ମୀଙ୍କ ପରି ଥିଲା ।

ପାଣି ଯୁଅ ସମ ଶତେଶ୍ୱ ମା ! ଧନ
ଅସିଲା କେତେ ଶତାବ୍ଦୀ ଅକଳନ
ଧନ୍ୟ ଧନ୍ୟ ମା ! ତୋ ସାଧବ ସନ୍ତାନ
ଋଦ୍ଧିମନ୍ତ ବେଳା ରମ୍ୟା ଗୋ । ୩ ।

କ୍ଷମତାର ଧ୍ୱଜା ଧର୍ମର କେତନ
ଭୂମଣ୍ଡଳେ କାହିଁ ନୋହୁଲା ଉଡ୍ଡୀନ !!
ତୋ ନାମ ଉଠାଇ କେତେ ଜୟଗାନ
ଅଶେଷ କୀରତ ଧାମା ଗୋ । ୪ ।

ଶୂର ଖାର ବକ୍ଷେ ବହୁ ଅଭ୍ର ବାରେ
କେଶରୀ-ଗହ୍ୱର ଭଳି କେଶନ୍ତରେ
ସ୍ୱଚ୍ଛନ୍ଦ-ମଣ୍ଡିଲା ନତ କାହାଠାରେ
ନୋହୁ ମା ! ନିଦଶ-କାମ୍ୟା ଗୋ । ୫ ।

୧୯୩୪



୩ । ସାଧବ—ପୂର୍ବକାଳର ଓଡ଼ିଆ ବଣିକ, ଋଦ୍ଧିମନ୍ତ – ବୈଭବପୂର୍ଣ୍ଣ, ବେଳା – ଉପକୂଳରେ [ ବନ୍ଦର ଅର୍ଥ ଖେନ ]; ରମ୍ୟା— ଶୋଭାବତୀ ।

୪ । କ୍ଷମତାର ଧ୍ୱଜା – କର୍ତ୍ତୃତ୍ୱର ପତାକା [ ପ୍ରାଚୀନ କଳିଙ୍ଗର ବିଶାଳ ସାମ୍ରାଜ୍ୟ ପ୍ରତି ଲକ୍ଷ୍ୟ କରାଯାଉଛି ]; କେତନ – ପତାକା ।

୫ । କେଶରୀ—ସିଂହ, ନିଦଶ—ଦେବତା; କାମ୍ୟା—କାଙ୍କ୍ଷିତା; ନିଦଶ କାମ୍ୟା—ଯହିଁରେ ଦେବତାମାନେ ବାସ କରିବାକୁ ଲାଳାୟିତ ।



—୧୨—

# କବିବର ରାଧାନାଥ ରାୟ

( ୧ )

( ରାଗ କଳହଂସ କେଦାର )

କବିବର ! ଚଇତ ପୂର୍ଣ୍ଣିମା ଦିନ
ଚଢ଼ି ଚନ୍ଦ୍ରିକା-ରଥେ କଲ ଗମନ
ଯେ ଧାମେ ସନ୍ଧ୍ୟାଁ ପିନ୍ଧି ଅଭ୍ର-ଅମ୍ବର
କବିତା-ବଧୂ ବନ୍ଧଥିବ ପଯ୍ୟର । ୧ ।

ରସ-ଆକର-ହ୍ରଦ ରସିକ କବି !
ଅଙ୍କିଛ ରସମୟ ବିବିଧ ଛବି;
ବିଧୁ-କିରଣ ସମ ତୁମ୍ଭର ଗୀତ
ବିଧୁଶିଳା ପାଠକ ଜନର ଚିତ୍ତ । ୨ ।

ଉତ୍କଳ ପ୍ରକୃତିର କମ୍ର ମାଧୁରୀ
କବିତା-ପଟେ ଦକ୍ଷ ତୂଳିକା ଧରି
ଲିଖିଛ ଚିତ୍ରକର ! ନା ଅବଲୋକି
ହେଲେ ମେଣ୍ଟାନ୍ତି ଯଥା ସୁଷମା-ଭେକୀ । ୩ ।

---

ଗତ ବହୁବର୍ଷ ଧରି ଉତ୍କଳ ସାହିତ୍ୟ ସମାଜର ରାଧାନାଥ ଶ୍ରାଦ୍ଧୋତ୍ସବରେ ଏହା ଗୀତରୂପେ ଗାନ ହୋଇଅଛି ।

୧ । ଚଇତ ପୂର୍ଣ୍ଣମୀ—ରାଧାନାଥଙ୍କ ମୃତ୍ୟୁଦିବସ ।

୨ । ବିଧୁଶିଳା—ଚନ୍ଦ୍ରକାନ୍ତ ମଣି—ଏହା ଯେପରି ଚନ୍ଦ୍ରକିରଣ ପଡ଼ିଲେ ତରଳିଯାଏ ରାଧାନାଥଙ୍କ କବିତାରେ ପାଠକଙ୍କ ହୃଦୟ ମଧ୍ୟ ସେହିପରି ଦ୍ରବୀଭୂତ ହୁଏ ।

୩ । କମ୍ର—କମନୀୟ ।

ନବୀନ କବିକୁଳ-ମହୁତ-ମଣି !
ନମୁଁ ହେ ଲଳିତ-ପଦ-ବଖାଣି !
ଆନନ୍ଦ-ସରୋବର ଅଛ ସରଜ
ନୁହଇ ପ୍ରମୋଦିତ କେ ତହିଁ ମଜ୍ଜି ? । ୪ ।

୧୯୩୨



—୧୮—

## ମନୋରମା

"Hear thee, view thee, gaze over all thy charms,
And round thy phantom glue my clasping arms."

*T. Campbell.*

ବଧାତା ଉଦ୍ୟାନେ ଚିର ପ୍ରସନ୍ନ ଗୋଲାପ !
ଅଙ୍ଗଘନେ ବନ୍ଧ ନାହିଁ କି ଶୋଭା-କଳାପ !!
ଯୁବାଚେନଙ୍କ-ବୁଭୁକ୍ଷାକୁ ଶାନ୍ତ ଅନ୍ତ ସର
କୁନ୍ଦେ ବସାଇଣ ବପୁ ଭଲ କୁଶଧାରୀ

୪ । ଆନନ୍ଦ ସରୋବର—ରାଧାନାଥଙ୍କ ଗ୍ରନ୍ଥାବଳୀ ଆନନ୍ଦର ଗୋଟିଏ ପୁଷ୍କରିଣୀ, ତହିଁରେ ଗାଧୋଇଲେ ଅର୍ଥାତ୍ ତାହା ପାଠକଲେ କିଏ ଆନନ୍ଦିତ ନ ହେବ ?



୧-୧୦ । ବଧାତା ଉଦ୍ୟାନେ……କଳାପ—ତୁମ୍ଭେ ବିଧାତାଙ୍କ ଉଦ୍ୟାନ—ବଗିଚାରେ ଚିର ପ୍ରସନ୍ନ—କେବେ ମଉଳି ନ ଥିବା ଗୋଲାପ ଫୁଲ ଅଟ । ଅଙ୍ଗଘନେ—ଦେହରେ; କଳାପ—ସମୂହ । ଯୁବାନେଙ୍କ…

ଗଢ଼ିଛୁ ସଜନି ! କାହିଁ ଅଛୁ ରେ ଉପମା
ଦେବି ? ମୋହ ନେବେ ତୁମ୍ଭେ ଶୋଭା-ସାର-ସୀମା ।
ଉର୍ବଶୀ-ଅତୁଳ-ଶୋଭା ଦିବେ ଲୋକିତ
ଏ ମର୍ତ୍ତ୍ୟ-ମୁକୁରେ ତୁମ୍ଭେ ତାର ବିମ୍ବବତ ।
ମରାଳ ମାନଇ ହାର ଗତିକି ଅନାଇଁ
ଦାମିନୀ ହସକେ ହାର ମେଘେ ଲୁଚେ ଯାଇଁ । ୧୦ ।

ଦୃଷ୍ଟିରେ ହରିଣ ହାର ହରିଣାଙ୍କେ ପଶେ
ଅଧରେ ଅରୁଣ ପଦ୍ମ ସମ ନୁହେଁ ଲେଶେ;
ପଦ୍ମ ଉକୁଟଇ ପଦ ଦେଲେ ବସୁଧାରେ
ଲକ୍ଷା ରଞ୍ଜି ନାହିଁ ତଥି କହିବି କାହାରେ ?
ଶତଦଳେ ଶୈବାଳ ସମାନ ଅଳକ
ସ୍ୱେଦବିନ୍ଦୁ ଯେସନ ମଣ୍ଡିଛନ୍ତି ଅହା ମୁଖ ।
ମନୋରମା ! ମୁଗ୍ଧ କବି ରୂପର କାଙ୍ଗାଳ
ରୂପ-ଅନ୍ନପୂର୍ଣ୍ଣା ! ରୂପେ ଧରି ରୂପଥାଳ
ଦେବ୍ ଅଣା ଯଦି ତେବେ ଶଚୀ-ପତି-ଭୃତ
ପାଦେ ଲକ୍ଷା କରି ତାକୁ, କରିଅ ପ୍ରାଣିତ । ୨୦ ।

---

ସର୍—ସୁବାଲୋକଙ୍କ ଅକ୍ଷିର ଭେକକୁ ତୁମ୍ଭେ ସବୁ ଗୃଢଳର ଭାତପର ରୋଚକ; କୃଶଧାତ୍ରୀ—ବିଧାତା; ଶୋଭାସାରସୀମା—ସୌନ୍ଦର୍ଯ୍ୟସାରର ସାର, ଦିବେ ଲୋକିତ—ସ୍ୱର୍ଗରେ ଦେଖାଯାଏ; ଏ ମର୍ତ୍ତ୍ୟ···ବତ—ସଂସାରରୂପ ଦର୍ପଣରେ ତୁମ୍ଭେ ତାର ପ୍ରତିରୂପ ।

୧୧-୨୦ । ହରିଣାଙ୍କ—ଚନ୍ଦ୍ର; ଉକୁଟଇ—ଫୁଟେ; ଲକ୍ଷା—ଅଳତା; ଶତଦଳ—ପଦ୍ମ; ଶୈବାଳ—ଶିଉଳି; ଅଳକ—ଚୂନଚୂନିଆ ବାଳ ।

ଗାଲିଗ୍ରୁ ନୋହିଲେ କର ଶ୍ରୀଚରଣ ନାହ୍ନୁ
ମଦାଳସେ ! ଗର୍ଜି ହଂସୀ ଗତି କର ଚହୁଁ ।
ଚଷି ନେଇ ବନ୍ତୁଦେହୀ କରିବା ଉଠାରୁ
ପରୁଷତା ବଡ଼ ହୋଇ ନାହୁଁ କରତେଉରୁ !
ଅୟି ମନୋରମା ! ମମ ସର୍ବ ଶ୍ରୀ ମନ୍ଦର
ହୁଅ ବରଦାୟୀ ଶୁଣି ବନ୍ଦନା ବନ୍ଦୀର ।

୧୯୩୫



ତୁମ୍ଭ ସୁନ୍ଦର ପାଦରେ ଅଳତା ନ ଦେଖି ଓ ସୁନ୍ଦର ମୁହଁରେ ଝାଳବିନ୍ଦୁ ଦେଖି ମୁଁ ବ୍ୟଥିତ—ଏକଥା କାହାକୁ ଜଣାଇବି ? ଶଚୀପତିଭୂତି—ଇନ୍ଦ୍ରବିଭବ; ପାଦେ ଲକ୍ଷା କରି ତାକୁ—କବିକୁ ତୁମ୍ଭ ପାଦର ଅଳତା କରି ।

୨୧-୨୬ । ଗାଲିଗ୍ରୁ ନୋହିଲେ କର—ତା ନ ହେଲେ କବିକୁ ତୁମ୍ଭ ଗୋଡ଼ ପକାଇବାର ଗାଲିଗ୍ରୁ କର; ଗର୍ଜି ହଂସୀ—ହଂସକୁ ହଟେଇ ସୁନ୍ଦର ଗତି କର, ବନ୍ତୁ—ଖାଲି, ବନ୍ତୁଦେହୀ କରିବା—ମନ ଗ୍ରେବଇ ନେଇ ଖାଲି ଦେହଟା ଥିବା ବ୍ୟକ୍ତି ବନେଇ ଦେବା; ପରୁଷତା—ନିର୍ଦ୍ଦୟପଣିଆ; ସର୍ବଶ୍ରୀ ମନ୍ଦର—ସବୁଶୋଭାର ଅବାସ; ବନ୍ଦନା—ସ୍ତୁତି ବନ୍ଦୀ—ବନ୍ଦନାକାରୀ, ଭାଟ ।



—୧୯—

# ସୈନିକର ବିଦାୟ

( ରୁଷିଅ କବିତାର ଛାୟା )

କଣିଦିବସ ପରେ ହେବ ଅସର,
ରହିବୁ ପଥ ଗ୍ଭହିଁ ବାନ୍ଧବ ! ମୋର,
ହୃଦେ ବାନ୍ଧିବୁ ଅଶା
ଫେରିବ ମୁକର ମୁଁ ମେଣ୍ଟାଇବୁ ତୃଷା ॥ ୧ ।

ଝିପ ଝିପ ବରଷା ବୂନ୍ଦ ସମାନ
ପଡ଼ି ମଥିରେ ହୃଦ ନୋହିବୁ ଛନ୍ନ,
କାଡ଼ ବାଧା ସହିବୁ,
ନିଦାଘ-ତାପେ ସନ୍ତାପିତ ନୋହିବୁ । ୨ ।

ବରଷ ପରେ ଚଳିଯିବ ବରଷ,
ମୋ ଦେଶ ଜ୍ଞାତି-ଜନ ହେବେ ନିରାଶ;
ବାରତା ମୋ ନ ପାଇ,
ଭୁଲିବେ ବୃଥା ଖାଲି ମୋ ପଥ ଗ୍ଭହିଁ । ୩ ।

ମୋ ସମ ଦୂରଗତ ସୈନିକ ଜନ
ପ୍ରିୟା-ବନ୍ଧୁ-ଜନେ ହେବେ ମଗନ,
ଭାଳି ଆଶା-ଜାଳରେ
ତଥାପି ପଥ ଗ୍ଭହିଁ ଥିବୁ ତୁ ମୋର । ୪ ।

ଫେରବି, ରହିଥିବୁ ମୋ ପଥ ଚାହିଁ,
ପାଇବୁ ନାହିଁ ଶଠା ପାଇଲେ କେହି,
ଶଠା ପାଇବା ସ୍ୱତ
ଅପରଙ୍କର; ତୋର ନୁହେ ସୁମତ ! ।୫।

ମୋ ଜନନୀ, ମୋ ସୁତ, ଲୋତକ ଢାଳି
ଖାଉଥିବେ ଜୀଇ ଆଉ ନାହିଁ ମୁଁ ବୋଲି
ମୋର ବନ୍ଧୁ ପଂକତ
ନାଗ୍ରର ଦେବେ ତୁତୁ ଅଶୋର ବର୍ଷା ।୬।

ବସି ଏକାଠି ଯେବେ ମୋର ବାପ୍ପର
ପଢାଇ ମୁଞ୍ଚିବେ ଟି ନୟନୁଁ ନୀର
ତୋରେ ସୁଣ ମୋ ଧନ !
ଲୋତକେ ନ ଧୋଇବୁ କେବେଁ ନୟନ । ୭ ।

ଲଗାଇ କାଳି ମରଣର ଲପନେ,
ରହିବୁ ପଥ ଚାହିଁ, ଅସିବ ଦିନେ
ଯେବେ ହୋଇ ଚକିତ
ଘୋଷିବେ ସବେ "ଜୟି ! ଏ ଅଲୌକିତ !" ।୮।

ନ ପାରିଲେ ଯେ ଧନ ! ମୋ ପଥ ଚାହିଁ
ସେ-ବେଳ-ମୋଦେ ଭାଗୀ ହେବେ କାହିଁ
ତୋର ଅଶାର ଡୋର
ଅଶିବ ଯେବେ ମୋରେ କତକ ତୋର ? ।୯।

---

୫ । ଶଠା ପାଇବା—ହକ୍‌ଦାର ହେବା ।
୬ । ପଂକତ—ସମୁଦ୍ର ।

ତୋ ଆଶା-କବଚ ମୋ ପ୍ରାଣ ରଖିବା
ଅନ ସହଜେ କପାଁ ବୁଝିବେ ଅବା ?
ଏକା ଆଶାୟୀ ଜନ
ଅରଜେ ଦେବତାର ଆଶିଷ ଦାନ । ୧୦ ।
ସେ ଦାନେ ଗରବିଣୀ ଏକା ତୁ ହୋଇ
ଗତ ଦୁଃଖ ପଛକୁ ଦେବୁ ପକାଇ
ଯେହ୍ନୁ ଜାଳେ ଜାଗର
ଫଳ ତା ଭୋଗ୍ୟ ଏକା ତୁଅଇ ତାର । ୧୧ ।

୧୯୪୪



—୨୦—

# ଲକ୍ଷ୍ମୀକାନ୍ତ ଚୌଧୁରୀ

( ବିୟୋଗେ )

ରାଗ—ଚନ୍ଦ୍ରାଦେଶାକ୍ଷ

( "ଆହା ଧନୁର୍ଦ୍ଧର ବୀରବର"—ବୃତ୍ତରେ )

(୧)

ଭାଷା ଲେଖନୀମୁନେ ମୋ ନାହିଁ
ଅଶ୍ରୁ ନେଇଁ ଯାଉଛୁ ଉଭାଇ
ଅଶନି ନିର୍ଘାତ ସମ ଏ ପ୍ରୟାଣ
କାହିଁ ଅଛ ମୁହଁଛପା ଦେଇ,
ହେ ସୁହୃଦ !

---

ଉତ୍କଳ ସଙ୍ଗୀତ ସମାଜର ପ୍ରତିଷ୍ଠାତା ସ୍ୱନାମଧନ୍ୟ ଦେଶପ୍ରାଣ ଅଧ୍ୟାପକ ଓ କବିଙ୍କ ଅକୃତ୍ରିମ ହିତୈଷୀ ଓ ବିପଦ ବନ୍ଧୁ ।

୧ । ଅଶନି—ନିର୍ଘାତ—ବଜ୍ରପାତ, ମୁହଁଛପାଦେଇ—ମୁହଁ ଲୁଚାଇ ।

(୨)

ମର୍ତ୍ତ୍ୟପୁର ସଂଗୀତ କି କର୍ଣ୍ଣେ
ଅଭ୍ର କଲା ନାହିଁ ହେ ତୋଷଣ ?
ଗୀର୍ବାଣ-ସଂଗୀତ- ଲାଳସୀ ହୋଇଣ
କଲ ଗୀର୍ବାଣପୁରୀ ଗମନ
ହେ ସୁହୃଦ !

(୩)

ଏତେ ଅତର୍କିତେ ଯିବା ପାଇଁ
ମନ ବଳାଇ କେମନ୍ତେ ଭାଇ !
ଗାନ୍ଧର୍ବ ସଂଗୀତ— ମୂର୍ଚ୍ଛନା କି କାନେ
ବାଜି ଦେଲା ସକଳ ଭୁଲାଇ
ହେ ସୁହୃଦ !

(୪)

କେଉଁ କଥା ମୋଠାରୁ ଛପାଇ
ରଖିଥିବା ମୋରେ ଜଣା ନାହିଁ
ଛାଡ଼ିଯିବ ବୋଲି ଏ ନିଗୂଢ଼ ପାଇଁ
କେବୁଁ ସଂପାଦିଲ ମନେ ନେଇ
ହେ ସୁହୃଦ !

---

୨। ଗୀର୍ବାଣ—ଦେବତା, ଗୀର୍ବାଣପୁରୀ—ସ୍ୱର୍ଗଭୁବନ ।
୩। ଗାନ୍ଧର୍ବ—ଗନ୍ଧର୍ବମାନଙ୍କର ।
୪। ଛପାଇ—ଲୁଚାଇ, ନିଗୂଢ଼—ଗୁପ୍ତ, ପାଇଁ—କପଟ, କେବୁଁ—କେବେଠାରୁ, ସମ୍ପାଦିଲ—ସାଇତିଲ ।

( ୫ )

ଛିଣ୍ଡି ପଡ଼ିଲା ମୋ ଦକ୍ଷ କର
ଭାଜି ଗଲେଟିଲା ନିର୍ଭର-ଘର
ବନଷ୍ଟ-କୁଳାୟ ବିହଙ୍ଗମ ସମ
ଅସହାୟ ଏବେ ଚକ୍ଷୁ ମୋର
ହେ ସୁହୃଦ !

( ୬ )

କାନ୍ତ-ସ୍ମିତ-ଶାଳୀ ତୁମ୍ଭ ମୁଖ
କାହା ମନେ ନ ଦେଇଛି ସୁଖ
ନିସର୍ଗ କୋମଳ ଯାହା ଏ ସଂସାରେ
ତୁମ୍ଭ ଭାଷା ତ ତାର ପ୍ରତୀକ
ହେ ସୁହୃଦ !

---

୫ । ଦକ୍ଷକର—ଡାହାଣ ହାତ, ଭାଜିଗଲେଟିଲା.....ଘର—ତୁମ୍ଭ ଉପରେ ନିର୍ଭର ରଖିଥିଲି—ସେ ଆଶା ବର୍ତ୍ତମାନ ତୁଟିଗଲା, ବନଷ୍ଟକୁଳାୟ ......ମୋର—କୁଳାୟ ଅର୍ଥାତ୍ ପକ୍ଷୀର ବସା ଭାଜି ଗଲେ ବିହଙ୍ଗମ ଅର୍ଥାତ ପକ୍ଷୀ ଯେପରି ଅସହାୟ ହୋଇପଡ଼େ ମୋର ଚକ୍ଷୁ ଆଜି ସେହିପରି ହୋଇପଡ଼ିଲା, ବିଶ୍ୱାସ କଥା ଶୁଣିବାକୁ କେହି ରହିଲେ ନାହିଁ ।

୬ । କାନ୍ତସ୍ମିତଶାଳୀ—ମଧୁର ମନ୍ଦ ହସରେ ମଣ୍ଡିତ, ନିସର୍ଗକୋମଳ—ସ୍ୱଭାବତଃ ଯାହା କୋମଳ, ତୁମ୍ଭ.....ପ୍ରତୀକ—ତୁମ୍ଭ କଥା ତାହାର ସୂଚକ ଅର୍ଥାତ୍ କୋମଳତାରେ ଅଗ୍ରଣୀ ।

(୭)

କୁଟିଳତାର ନିସୀମାଠାରୁ
ବହୁଦୂରେ ଥିଲ ସଦା ଗୁରୁ ।
ଶିକ୍ଷିତ-ସମାଜ ଗୌରବ ଅସ୍ପଦ
ଯେଣୁ ସତ୍ୟସନ୍ଧ ଧର୍ମଭୀରୁ
ହେ ସୁହୃଦ !

(୮)

ଉତ୍କଳୀୟ କଳା କୃଷ୍ଟି ପାଇଁ
ଅର୍ଜି କଏ ସେ ଅଦ୍ଭୁତ ଦେଇ
ସ୍ୱାର୍ଥ ମେଧ ଯଜ୍ଞ ଅନଳ ଜାଳିବ
କାହିଁ ଅଧିକ ତ ଦଶୁ ନାହିଁ
ହେ ସୁହୃଦ !

---

୭ । କୁଟିଳତା—ଛଳକପଟ; ଅସ୍ପଦ—ସ୍ଥାନ; ସତ୍ୟସନ୍ଧ—ସତ୍ୟବ୍ରତ; ଧର୍ମଭୀରୁ—ଧାର୍ମିକ ( କବି କଲେଜରେ ଅଧ୍ୟାପକ ମହାଶୟଙ୍କ ଛାତ୍ର ଥିଲେ; ପରେ ପ୍ରାଚୀ ସମିତିରେ ସହକର୍ମୀ ଓ ବନ୍ଧୁ ହେଲେ । )

୮ । ଉତ୍କଳୀୟ······ଦଶୁନାହିଁ—ଉତ୍କଳର କଳା ଓ ସଂସ୍କୃତିକୁ ପ୍ରତିଷ୍ଠା-ପିତ କରିବା ନିମନ୍ତେ ଚଉଧୁରୀ ନିଃସ୍ୱାର୍ଥପର ଭାବରେ ଧନ ଓ ବହୁମୂଲ୍ୟ ସମୟ ବ୍ୟୟ କରୁଥିଲେ । ଯେଉଁ ଯଜ୍ଞରେ ସ୍ୱାର୍ଥକୁ ବଳି ଦିଆଯାଏ ତାହା ସ୍ୱାର୍ଥମେଧ ଯଜ୍ଞ ।

( ୯ )

ଦୀନଜନଙ୍କ ବିପଦ ବନ୍ଧୁ !
ପୀଡ଼ାଗ୍ରସ୍ତଙ୍କୁ କରୁଣା ସିନ୍ଧୁ
ବାନ୍ଧବ ଜନଙ୍କ ଅଶ୍ରୟ ପାଦପ
ମମ ଶରଧା-କୁମୁଦ-ଇନ୍ଦୁ
ହେ ସୁହୃଦ !

(୧୦)

ସ୍ନେହମୟୀ ମାତା ଜୀବଧନ
ଦେଶ ମାତୃକା ଯୋଗ୍ୟ ନନ୍ଦନ
ପରୁଷ ନୁହେ କି ଜୀବନ ମଧ୍ୟାହ୍ନେ
ଶୂନ୍ୟ କରିଗିବା ନିଜ ସ୍ଥାନ
ହେ ସୁକୃତ !

(୧୧)

ଦେଶେ ଥିଲା ତୁମ୍ଭ ପ୍ରୟୋଜନ
କରି ଶ୍ରୀହୀନ ବାଣୀ ଭବନ
ଗୁଣି ମୁଗ୍‌ଧ ଗୋଷ୍ଠୀ ହୃଦେ ଶେଲ ବିନ୍ଧ
କଲ୍ ଅକାଳେ ମହା ପ୍ରୟାଣ
ହେ ସାଧକ !

---

୯ । ଅଶ୍ରୟ ପାଦପ—ଆଶ୍ରା କରିବାର ସ୍ଥାନ ଯେପରିକି ବୃକ୍ଷ ବିଶେଷ ଯହିଁରେ ବହୁତ ପକ୍ଷୀ ବସା ବାନ୍ଧି ରହିଥାନ୍ତି । ପାଦପ—ବୃକ୍ଷ; ଶରଧା-କୁମୁଦ-ଇନ୍ଦୁ—ଶ୍ରଦ୍ଧା ବା ସ୍ନେହର ଆକର୍ଷକ ।

୧୦ । ସ୍ନେହମୟୀ—ସ୍ନେହଶୀଳା; ମାତା—ଜନନୀ ( ର ଜୀବନ ଧନ ) ଅଥବା ସ୍ନେହମୟୀ—[ ତାଙ୍କ ଜ୍ୟେଷ୍ଠା କନ୍ୟା ] ର ମାତାର ଜୀବନ ଧନ; ଦେଶ ମାତୃକା—ଜନ୍ମଭୂମି; ପରୁଷ—କଠୋର ।

୧୧ । ଶ୍ରୀହୀନ—ହତଶ୍ରୀ; ବାଣୀଭବନ—ଭଗବତୀ ଭାରତୀଙ୍କ ପୂଜା ପୀଠ; ଶେଲ—ଅସ୍ତ୍ର ବିଶେଷ; ମହାପ୍ରୟାଣ—ସ୍ୱର୍ଗଯାତ୍ରା ।

(୧୨)

ଦିବଂଗତ ସାଧକଙ୍କ ମେଳେ
ବିଳସୁଥିବ ତ କୁତୂହଳେ
ଅମୃତ ଦୃଷ୍ଟିରେ ସେ ଧାମରୁ ସଦା
ଚାହୁଁଥିବଟି ପ୍ରିୟ ଉତ୍କଳେ
ହେ ସୁକୃତ !

(୧୩)

ମୃତ୍ୟୁ ପରଦା ସେ ପାରେ ରହି
ଦୟା ବନ୍ଧଣ ଦିଅ ବଢାଇ
ତୁମ୍ଭ ଆଦରଣ ପ୍ରଦୀପର ଶିଖା
ଯେତେବେଳେ ରଖିବୁଁ ସଦା ଜଳାଇ,
ହେ ସୁକୃତ !

(୧୪)

ଆଜ ଏ ଧାମେ କ୍ଷଣକ ପାଇଁ
ଦିବ୍ୟ ତନୁରେ ଆସ ଓହ୍ଲାଇ
ଶରଧା ସୁମନେ ଅଯନ ସାଜଣି
ହୃଦ ପୀଠରେ ଅଛୁଁ ବସାଇ,
ହେ ଅମର !

---

୧୨ । ଦିବଂଗତ—ସ୍ୱର୍ଗଗତ, ବିଳସୁଥିବ—କ୍ରୀଡ଼ା କରୁଥିବ; ସୁକୃତ—
ପୁଣ୍ୟକର୍ମା ।

(୧୫)

ଅସି ସପ୍ନେହେ ଭାହ୍ନେ ରେ ବସ
ପରଶତି ସ୍ନିତେ ଭୁମ୍ବ ହସ
ସେ ଧାମରେ ଭେଟ ହେବାଯାଏଁ ଭଲ
ଶୋକ-ତାମସ ଏ ହୃଦୁଁ ନାଶ
ହେ ସୁହୃଦ !

୧୯୪୦



—୨୧—

## ଜିଜ୍ଞାସା

( ରାଗ ଭୈରବ—ଅଠତାଳ )

ଖାରବେଲ ସୁହାଗିନୀ ତୁହ୍ନ ମା ଟିକା । ଘୋଷା ।
ବପୁଳ-ବାରଣ-ସେନା- ପଦ-କମ୍ପ-ଅପଘନା !
ବୀର-ମେଦମୟ୍ୟ ତୋର ଏହ୍ନ ମାଟି କା ? ୧ ।

---

୧୫ । ସେ ଧାମରେ—ପରଲୋକରେ; ଶୋକତାମସ—ଦୁଃଖରୂପ ଅନ୍ଧାର ।



୦ । ଖାରବେଲ—ପ୍ରାଚୀନ କଳିଙ୍ଗର ଭାରତ ବିଜୟୀ ସମ୍ରାଟ, ସୁହାଗିନୀ-( ଙ୍କ ପ୍ରତି ) ସ୍ନେହଶୀଳା ।
୧ । ବପୁଳ—ବହୁଳ; ବାରଣ-ସେନା—ଗଜାରୋହୀ ଫଉଜ; ପଦକମ୍ପ-ଅପଘନା—ପାଦରେ କମ୍ପୁଥିବା ଅପଘନ—ଶରୀର ଯାହାର; ବୀରମେଦମୟ୍ୟ—ବୀରଙ୍କ ମେଦରେ ଗଢା ।

ଥଳେ ମା ! ଦୁର୍ଗ ଶାଳିନୀ                    ଜଳେ ବୋଇତ ମାଳିନୀ
ନବତଳ ଉଆସ ଏ ବାରବାଟୀ କି ? ୨ ।

ବିଦେଶେ ଉଦର ଅନ                    ଖୋଜନ୍ତି ଯାଙ୍କ ସନ୍ତାନ
ତୋ ଦେଉଳେ ତାଙ୍କ କଳା-ପରିପାଟୀ କି । ୩।

ବାବଦୂକ ଇତିହାସ                    କାନେ ଦିଏ କେତେ ଗ୍ରାସ
ନେଇ ଉଦାସ ଶୁନ୍ଦି ତୋ ଷୀଣ ନାଟୀ କି । ୪ ।

ବନ୍ୟାସମ ପଉରୁଷ                    ହେବ କେବେ ପରବେଶ
ଅତୀତ ଉଠିବ ଭଲି ଗର ମାଟି କି । ୫ ।

ବିଚ୍ଛିନ୍ନ ଗଡ଼ାଇ ଲିହ                    ପଶୁରେ ସମସ୍ତ-ମୁଣ୍ଡ
ମୁହେଁ କି ଦୁଃଖ ନିବହ ଥିବ ଅଟକି । ୬ ।

୧୯୩୪



୨ । ନବତଳ ଉଆସ ଏ ବାରବାଟୀ କି ?—ଏ ଯେଉଁ ବାରବାଟୀ ରହିଛି ଏଥିରେ ତୋ ସମ୍ରାଟଙ୍କ ନଅ ମହଲ ପକ୍କାର ଉଆସ ଥିଲା କି ?

୩ । ଉଦର ଅନ—ପେଟର ଦାନା ।

୪ । ବାବଦୂକ—ବହୁତ କଥା ଗପୁଥିବା, ଗପଡ଼; କାନେ ଦିଏ କେତେ ଗ୍ରାସ—କାନକୁ ବହୁତ ଖାଦ୍ୟ ଦିଏ ଅର୍ଥାତ ବହୁତ କଥା ଶୁଣାଏ; ଉଦାସ—ନିରୁତ୍ସାହ, ଷୀଣ—ଦୁର୍ବଳ; ନାଟୀ—ନାଡ଼ି ।

୫ । ବନ୍ୟା—ନଇବଢ଼ି; ପଉରୁଷ—ପୁରୁଷପଣିଆ, ବିକ୍ରମ ।

୬ । ଦୁଃଖନିବହ—ଦୁଃଖ ସବୁ ।



୮

—୨୨—

# ଶିଶୁ ରଞ୍ଜନ

## ମାଆଙ୍କ ବର ଓ ଅଭିଶାପ

( ରାଗ—ବଙ୍ଗଳାଶ୍ରୀ )

ବୁଢ଼ୀ ଡରାଣ୍ଟିଏ ଅଛଇ ଅକାଶେ
ବସିଲେ ନ ପାରେ ଉଠି,
ଚନ୍ଦ, ସୂର୍ଯ୍ୟ ଆଉ ପବନ ଦେବତା
ଏମାନଙ୍କ ମାଆ ସେ ଟି ।
ସରଗରେ ଠାଏ ଭୋଜି ହୋଇଥିଲା
ତିନି ପିଲା ଗଲେ ଖାଇ
ଚମ ଧୂଡ଼ୁ ଧୂଡ଼ୁ ବାଡ଼ି ଠୁକୁ ଠୁକୁ
ବୁଢ଼ୀ ନ ପାରିଲା ଯାଇ ।
ଭୋଜିରେ ଦେଖିଣ ଅପୂର୍ବ ପଦାର୍ଥ
ପବନ ଖାଇଲା ଲୋଭେ,
ସୁଆଦ ଭୋଳରେ ମାଆ ବୁଢ଼ୀ କଥା
ନ ଭୁଲିଲା ସେଥୁ ଲବେ ।
ସୂର୍ଯ୍ୟ ତାହା ପରି ପକାଇଲା ପେଟେ
ପତରେ ପଡ଼ିଲା ଯାହା
ଖାଇବାରେ ମାତି ଭୁଲିଲା ନାହିଁ ସେ
ମାଆ ବୁଢ଼ୀ କଥା ଅହା ।
ଚନ୍ଦ ହେଣୁ ଝିଅ ମାଆ ପାଇଁ ତାର
ଘାଣ୍ଟି ହେଲା ହସ୍ତ ମନ

ଖାଇଲା ପତରୁ ମାଅ ପାଇଁ କିଛି
ରଖିଲ କରି ଯତନ ।

× × × ×

ପବନ ଫେରିଲା ଗଗନ କମ୍ପାଇ
ମାଅ ପଚାରନ୍ତି "ବାବୁ !
ଭୋଜରୁ ମୋ ପାଇଁ କିଛି ଅଣିନାହୁଁ
ଖାଇ ଦେଲୁ କି ରେ ସବୁ" ?
ପବନ କହିଲା ରାଗରେ "ବୁଢୀ ! ତୁ
ଅପେ ନ ପାରିଲୁ ଯାଇ
ସ୍ୱୀକାର ନୁହେ ମୁଁ ଅପୂର୍ବ ଦରବ
ଆଣନ୍ତି ତୋ ପାଇଁ ବହି" ।

× × × ×

ତେଜରେ ଝଟକି ଲେଉଟିଲା ସୂର୍ଯ୍ୟ
ବୁଢ଼ୀ ପଚାରଇ "ବାବୁ !
ଭୋଜରୁ ମୋ ପାଇଁ କିଛି ଅଣି ନାହୁଁ
ଖାଇ ଦେଲୁ କି ରେ ସବୁ" ?
ଅଖି ରଙ୍ଗାଇଣ ଗରଜିଲା ସୂର୍ଯ୍ୟ
"ବଡ଼ ଅଲକ୍ଷୀ ତୁହି
ଅପୂର୍ବ ଦରବ ବୁହନ୍ତି ତୋ ପାଇଁ
ସ୍ୱୀକାର କି ତୋର ମୁହିଁ" ?

× × × ×

ହସ ହସ ମୁହେଁ ଫେରିଲା ଚନ୍ଦ୍ରମା
ମାଅ କହିବା ଅଗରୁ,

ନାଡ଼ିଦେଲ ଅଣି କାଢ଼ି ରଖିଥିଲ
ଯାହା ସେ ନିଜ ଭାଗରୁ ।
ପିଲାଙ୍କୁ ଡାକିଣ କହୁଛନ୍ତି ମାଏ
"ଜଣି ଜଣ ହୋଇ ଶୁଣ
ସାମାନ୍ୟ କଥାରୁ ଜଣା ପଡ଼ିଗଲ
ତୁମ୍ଭ ଭଉଣୀଙ୍କର ଗୁଣ" ।
ଅପସୁଅର୍ଥୀ ତୁ ଅଛୁ ରେ ପବନ
ଧେନ ମୋର ଅଭିଶାପ,
ଘୁଞ ଘୁଞ ହୋଇ ଗର୍ଜି ମରୁଥିବ
ତେବେ ନ ଘୁଞ୍ଚିବ ପାପ,
ଯାହାକୁ ଛୁଇଁବୁ ସେହୁ ଶୁଖିଯିବ
ଲୋକେ ତୋତେ ତଣ୍ଡଦେଇ
କିଳିବେ କବାଟ ହୋଇ ଛଟପଟ
ମୁଣ୍ଡ ତୁ ହେବୁ ବାଡ଼େଇ" ।

× × × ×

"ପବନ ସମାନ ଅପସୁଅର୍ଥୀ ତୁ
ସୂର୍ଯ୍ୟ ମୋହ କଥା ଶୁଣି
ଜଳୁ ପୋଡ଼ି ହୋଇ ମରିବୁ ତୁ ସଦା
ଜାଳି ସଭିଙ୍କ ପରାଣ ।
ତୋଡ଼ା ମୁହଁ ତୋର କେହି ନ ଚାହିଁବେ
କହୁ ଯେଣୁ କଟୁ କଥା
ବୃଦ୍ଧ ବୟସରେ ମନରେ ମୋହର
ଦେଲୁ ଏତେ ବଡ଼ ବ୍ୟଥା ।

× × × ×

"ସୁନ୍ଦରୀ ଅଟଳେ ସତ୍ୟ !          ନାଥ ଦୁଃଖେ ଯେଣୁ
ଚଳିଲ ଲୋହ ମନ
ରୂପେ ଗୁଣେ ଟଟେ          ଏ ସାରା ଜଗତେ
ନୋହିବେ କେହି ସମାନ ।
ଜଗତ ସାକର          ମନ କୁ ମୋହକୁ
ଅକାଶେ ଦେଖି ତୋ ଗତି
ମଣିପୁର ଲୋକେ          ଗଣନା କରବେ
ବର୍ଷ ମାସ ଅଉ ତିଥି" ।

୧୯୩୯



—୨୩—

# କିଶୋର ପାଖକୁ କାମିନୀ

ରାଗ ଚନ୍ଦ୍ରା ଦେଶାକ୍ଷ
( ଅହା ଧନୁର୍ଦ୍ଧର ବୀରବର—ବୃତ୍ତରେ )

ମୋହ ଉଠିବ ନାହିଁ ଉତ୍ତର
ଭରି ଅଣଙ୍କରେ ମୋ ଅନ୍ତର
ଦିନେ ଗଲେ ଯୁଗେ ଯାଉଛି ମୋହର
ତୁମେ ହୋଇବା ଦିନୁ ଅନ୍ତର ହେ
କିଶୋର ! । ୧ ।

---

୧ । ଅନ୍ତର—ଦୂର

ତୁମ୍ଭେ କହୁଥାଅ ରେ ବାନ୍ଧବ !
ମୁହିଁ କବ ତୁ ସିନା ମୋ ଛବ
ତୋର ଅଦର୍ଶନେ କବତା ମୋ କାହିଁ
ତୋର ବିରହ ତ ମୋତେ ଯବ ହେ
କଶୋର ! । ୨ ।
ଦିନ ପନ୍ଦରକୁ ଗଲ କହ
ମାସ ଦୁଇ ଯେ ଗଲଣି ବହ
ଦିନ୍‌ଁ ଦିନ ବଢୁ ହେଲ ଏ ବିରହ
କେଉଁଠୋ ଧରବ ଭଲ ମୁଁ ଦେହ ହେ
କଶୋର ! । ୩ ।
କହଥିଲ "ଛାୟା ଛାୟା ସର
ମୁହିଁ ତୋର ତୁ ମୋର ସୁନ୍ଦର !"
ଚନ୍ଦ୍ର ହୋଇ ମୋତେ ଚନ୍ଦ୍ରିକା କରିବା
ସତେ ପକାଇଲ କ ପାସୋର ହେ
କଶୋର ! । ୪ ।
କହ କହ ପ୍ରିୟ ମୋର ! ସତ
ହୋଇ ପଡ଼ିଛ ଅବା ପୀଡ଼ିତ
"ସକଳ ବ୍ୟାଧିର ଭେଷଜ ତୁ ମୋର"
ମୋତେ କହିଛ ବାର ବହୁତ ହେ
କଶୋର ! । ୫ ।

---

୨ । ଯବ—ବଜ୍ର
୩ । ଦେହ—ଦେହ
୪ । ଚନ୍ଦ୍ରିକା—ଚନ୍ଦ୍ର କିରଣ
୫ । ଭେଷଜ—ଔଷଧ

ମୋରେ ରଖିଯାଇ ବନ୍ଧୁ ! ଦୂରେ
ପୀଡ଼ା ଭୋଗୁଅଛ କି ଦେହରେ
ସଂଶୟ ନାଅଁରେ କିଅଁ ଜାଲ ମାରି
ମୋତେ ଭସାଇ ଦେଇ ଲହରେ ହେ
କିଶୋର ! ।୬।

ଯେବେ ହୋଇଥିବ ତୁମ୍ଭ ପୀଡ଼ା
ସତ କହୁଛି ତେଜି ମୁଁ ବ୍ରୀଡ଼ା
ଚରଣ ସେବାକୁ ପରସ୍ପର ସବ
ଯହିଁ ତହିଁ ହୋଇବଇଁ ତୁଡ଼ା ହେ
କିଶୋର ! ।୭।

ମୋତେ ପହିଲେ ଦେଖିଲ ଦିନ
ଢେଡ଼େ ସରାଗେ ଫିଙ୍ଗି ସୁମନ
ଶଶିଜିତ ମୁଖେ ସୁହାସ ପୂରାଇ
ଚତୁରାକ୍ଷେ ବଳାଇଲ ମନ ହେ
କିଶୋର ! ।୮।

ମୋର ଥିଲା ନାହିଁ ବନ୍ଧୁ ! ସ୍ମର
ନେତ୍ର-ବାଗୁରାରେ ଦେଲ ଧରା
ପ୍ରତିଭା-ଦୀପିତ ବଦନ ତୁମ୍ଭର
ମାନସକୁ ମୋ ହୋଇଲା କାରା ହେ
କିଶୋର ! ।୯।

---

୭ । ବ୍ରୀଡ଼ା—ଲଜ୍ଜା
୮ । ଶଶିଜିତ—ଶୋଭାରେ ଚନ୍ଦ୍ରକୁ ଜିଣିଥିବା; ଚତୁରାକ୍ଷ—ସୁନ୍ଦରଚକ୍ଷୁ
୯ । ସ୍ମର—ଶଙ୍କା; ବାଗୁରା—ଜାଲ; ପ୍ରତିଭା ଦୀପିତ—ପ୍ରତିଭାର ଆଲୋକରେ ଉଜ୍ଜ୍ୱଳ; କାରା—କଏଦଘର

ଦିନେ ବୁଲଣ ଘାଟରେ ମୁହିଁ
ହଜିଥିଲି ଟି ପଥ ହରାଇ
ତାତ ମାତ ମୋର ଅଥୟ ହୋଇଲେ
ଖୋଜି "କାମିନି ! ଗଲୁ ତୁ କାହିଁ" ହେ
କିଶୋର ! । ୧୦ ।

କାହୁଁ ଦେବତା ସମାନ ଆସି
ଜନ ଗହଳରେ ତୁମ୍ଭେ ପଶି
ଅପରିଚିତାଙ୍କ ମେଳୁଁ ମୋରେ ନେଇ
ପହୁଞ୍ଚାଇଲ ତାଙ୍କ ଶୋକ ନାଶି ହେ
କିଶୋର ! । ୧୧ ।

ସେହି ଦିନରୁ [illegible]ହେ ଅମର
ବଢ଼ି ଚାଲିଛି ତମ ଆଦର,
କେହି ନ ଜାଣିଲେ ଆଗୁଁ ହୋଇଥିବା
ତୁମ୍ଭେ କାମିନୀ-ମାନସ-ଚତୁର ହେ
କିଶୋର ! ! ୧୨ ।

କେତେଠ ବାର ଜଳପାନ ନେଇ
ନିଜ କରେ ଦେଇଛୁ ଭୁଞ୍ଜାଇ
ସକଳେ ଜାଣନ୍ତି ନଗ୍ରହା କାମିନୀ
ତାର ବଅସ ଚେ ହୋଇ ନାହିଁ ହେ
କିଶୋର ! । ୧୩ ।

---

୧୩ । ଜଳପାନ—ଜଳଖିଆ

ତୁମ୍ଭେ କରବା ବେଳେ ଆହାର
ଗୁରୁଜନେ ହୋଇ ଯାନ୍ତି ଦୂର,
ସକଳେ ଭାଳନ୍ତି ଲାଜକୁରି ଅତି,
ଏକା ଜାଣେ ମୁଁ ଗୁଣ ଅପାର ହେ
କିଶୋର ! ।୧୪।

ଅପ୍ ଘର ଆଦରର ଧନ !
ଅହେ କାମିନୀ-ଜୀବ-ଜୀବନ !
ମାସ ଦୁଇ ହେଲା ରହିଲ ନୀରବ,
କେମନ୍ତେ ତରୁ ନାହିଁ ତୁମ୍ଭ ମନ ହେ
କିଶୋର ? ।୧୫।

ମୋର ନୟନ କୋଟର-ଗତ
ଦେଖି ଶୋକାତୁର ତାତ ମାତ;
ଡାକତର ଡାକି ପରଖାନ୍ତି ଛାତି
ମୋର ବିକାର ତାଙ୍କୁ ଅଜ୍ଞାତ ହେ
କିଶୋର ! ।୧୬।

ତୁମ୍ଭ ଲାଗି ମୋ ସବୁ ବିକାର,
ଏକା ତୁମ୍ଭେ ଭିଷକ ତହିଁର;
ମୋ ରୂପତ ପ୍ରେମ ଗଣେଶ ଟି ତୁମ୍ଭେ
ମୋର ରତ୍ନ-ବଇଭବ-ସ୍ତୋର ହେ
କିଶୋର ! ।୧୭।

---

୧୫ । ତରୁ ନାହିଁ—ତରଳୁ ନାହିଁ ।

୧୬ । କୋଟରଗତ--କୋରଡ଼ରେ ପଶିଥିବା ।

୧୭ । ଭିଷକ--ବୈଦ୍ୟ; ଗଣେଶ-ଗୁରୁ; ବିଦ୍ୟାଦାତା; ବଇଭବ-ଧନ ।

ଫୁଲ୍ ପିଙ୍ଗି କ୍ଷଣିଲ ମୋ ମନ,
ଆଗେ ଧନୀ ପଛେ କଲ ଦାନ;
ମନ-ପୋଡ଼ ମୋର କଏ ସେ ଜାଣିବ ?
ଦୂରେ ରହିଲ ଜାଣିବା ଜନ ହେ
କିଶୋର ! । ୧୮ ।

ରଖିଥିବ ସେ ଝର-କଲମ
ଯାହା ଛୁଇଁ ଥିଲ ଉର ମମ
କରେ ବ୍ଲାଉସରୁ କାଢ଼ି ତା ନେଇଛ
ଭାବି ତାହା ମୋ ଦାନ ପରମ ହେ
କିଶୋର ! ୧୯ ।

ତହୁଁ ଝରବ କବିତାଧାର;
ବିଶ୍ୱେ ମୋହିବା ପାଇଁ କି ପର,
ମୁଁ ପୁଣି କେଉଁ ଠି ରୂପିଣୀ କବିତା !!!
ଲେଖଣୀ ମୋ ତା ଅଧାର ପର ହେ
କିଶୋର ! । ୨୦ ।

ମନେ ପଡ଼େ କି ବିଦାୟ ଦିନ ?
"କିଶୋରକୁ ଦେଇ ଆ ତୁ ପାନ"
ବୋଲି ଆଦେଶିଲା, ଗଲି ତୁମ୍ଭ କତି
ତୁମ୍ଭେ ଏକା ଥିଲ ଉପବନ ହେ
କିଶୋର ! । ୨୧ ।

---

୧୮ । ମନପୋଡ଼—ମୋ ମନ ଜଳି ପୋଡ଼ିଯିବା କଥା [ ଯଥା—ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି ମନ ପୋଡ଼ିଗଲେ କିଏ ସେ ଜାଣେ ? ]

୨୦ । ଝରକଲମ—ଫାଉଣ୍ଟେନ୍ ପେନ୍; ଉର—ସ୍ତନ ।

ମୋରେ ଆଲିଙ୍ଗି ଗଣ୍ଡେ ମୋ ଲହୁ
ଢାଳି ଦେଇ, ବନ୍ଧୁ କଣ୍ଠେ କୋହ,
ସବୁ କଥା ସଖା ! ଅକୁହା ରହିଲି
କେବେ ପିଞ୍ଚାଇ କହୁବ କହ ହେ
କିଶୋର ! । ୨୩ ।

ଯେତେ କଥା ଥିଲି ମନେ ରହୁ
ତେତେ ତରଙ୍ଗ ସିନ୍ଧୁରେ ନାହିଁ;
ଭଗାଇ ହୋଇଲି କଣ୍ଠେ କୋହ ମୋର
ଆଖି ଆଖି କି ଥିବ ବା କହୁ ହେ
ସୁନ୍ଦର ! । ୨୪ ।

ମୁହିଁ ଯୋଗାଇ ଥିବାର ପାନ
କର ସବୁଗେ ମୁଖେ କ୍ଷେପଣି
ଅଶ୍ରପତା ମୋର ଲୋତକେ ଧୋଇଣ
ମୋର ପରାଣ କଲି ମଳିନ ହେ
ସୁନ୍ଦର ! । ୨୫ ।

ଜଳି ଯାଉଛୁ ମୋ ଚିତ୍ତ-ଧରା,
କର ବରଷା ତୋଷ-ଅସରା,
ବୋଉ କହୁଥିଲି ବାପାଙ୍କୁ "କାମିନୀ
ମୋରେ ଲଗେ କିଶୋରର ପରି" ଟି
ସୁନ୍ଦର ! । ୨୬ ।

---

୨୫ । କର କ୍ଷେପଣ—ପକାଇ ।

୨୬ । ଚିତ୍ତ-ଧରା--ହୃଦୟ ରୂପ ପୃଥିବୀ ।

ପ୍ରାଣ ଉପବନ ମାଳୀ ମୋର !
ଅଜ୍ଞ ନ କର ଦନେ ଉତ୍ତର
ରୁପିଣୀ ଈବତା କହୁଛ ଯାହାକୁ
ମାଧୁରୀ ତା ହେଲ ନାରଖାର ହେ
ସୁନ୍ଦର ! ୨୨ ।

୧୯୪୫



—୨୪—

# କାମିନୀ ପାଖକୁ କିଶୋର

ରାଗ—କଳହଂସ କେଦାର

( ଦ୍ୱିତୀୟା ଯାମିନୀରେ ମୋ ପ୍ରାଣ ସଖୀ—ବୃତ୍ତରେ )

ମୋ ହୃଦ ଶରଦନ୍ଦୁ କାମିନୀ ବାଳା !
କର-କମଳ-ଲିପି ପାଇଲି କାଲି,
କରମ ଗୁପେ ଦେଇ ନାହିଁ ଉତ୍ତର
ଭରମଦେହା ଅପରାଧୀ କୋୟର । ୧ ।

---

୨୨ । ରୂପିଣୀ--ରୂପଧାରିଣୀ; ମାଧୁରୀ--ଶୋଭା, ଲାବଣ୍ୟ, ମଧୁରତା ।



୧ । ଶରଦନ୍ଦୁ—ଶରତ୍କାଳର ନିର୍ମଳଚନ୍ଦ୍ର; ଲିପି—ଚିଠି; କରମ—ଗୃପେ ନନ୍ଦ୍ୱତ କାମ ପଡ଼ଥିବାରୁ; ଭରମଦେହା—ଭର୍ମଦେହା—ସୁନାଗୋରୀ; କୋୟର—ସେବକ ।

ମୁଦିଲ ପଦ୍ମ ସମ ନୟନ ତୋର
ଲେଖିକୁ ପକ୍ଷ ଭଜିଲଣି କୋଠର ।
ଅୟି ମୋ ଚିତ୍ତ-ସରସୀର ମରାଳ !
ଛାଡ଼ି ଯାଏ ମୋ ପାଖି ତୋ ଛବି ଭୁଲ । ୨ ।

ହୁଗୁଳା କଙ୍କଣ ତୁ ଦେଉଣି ଥୋଇ,
ଚାରଭ ଥିବୁ ନାମ ବସିଲ ଠାଇଁ,
କଙ୍କତିକା ପରଶ ନ ଲଭି କେଶ
ପବନେ ଉଡ଼ୁଥିବ ହୋଇ ଉଦାସ । ୩ ।

ବାଜ ନ ଥିବୁ ବୀଣା ତୋଳି ଝଙ୍କାର,
ବେହେଲ ହୋଇବଣି ତୋ ନାରଖାର,
ବସିବା ବାତାୟନ ପାଶରେ ଅସି
ନୟନେ ଛାଡ଼ି ଦେଉଣି ତୁ ସୁହାସି ! ୪ ।

ବିରଳ ହୋଇବଣି ସୀମନ୍ତେ ଚାର,
ଅଞ୍ଜନ ନେତ୍ରୁଁ ହୋଇବଣି ଅନ୍ତର,
ଗଣ୍ଡେ ବିମ୍ବିତ ଦୁଲ କାଢ଼ି କାନରୁ
ଅନାଦରେ ତୁ ଫିଙ୍ଗିବୁଣି ରମ୍ଭୋରୁ ! ୫ ।

---

୨ । ଭଜିଲଣି କୋଠର—କୋରଡ଼ରେ ପଶିଲଣି; ସରସୀ—ପୋଖରୀ; ମରାଳୀ—ହଂସୀ ।

୪ । କଙ୍କତିକା—ପାନିଆଁ; ଉଦାସ—ଅବହେଳାପ୍ରାପ୍ତ ।

୫ । ବିରଳ—ଦେଖିବାକୁ ଦୁଷ୍ପ୍ରାପ୍ୟ; ସୀମନ୍ତ—ସୁନ୍ଥା; ଗଣ୍ଡେ ବିମ୍ବିତ—ଝଟକୁଥିବା ଗାଲରେ ପ୍ରତିଫଳିତ; ରମ୍ଭୋରୁ—କଦଳୀଗଛ କାଣ୍ଡ-ପରି ଯାହାର ଜଙ୍ଘ, ସୁବଳିତ ।

ପାଣ୍ଡୁର ହୋଇବଣି ଅଧର-ବିମ୍ବ,
ପିତା ହେବଣି ପାନ ଯେସନ ବିମ୍ବ;
କମ୍ବୁ କଣ୍ଠରୁ ହାର କର ବାହାର!
କାଞ୍ଚଲ-ପିଦ୍ଧା କରବୁଣି ତୁ ଦୂର । ୬ ।

କାଞ୍ଚୀ ଦାମ କଟୀରୁ ଦେବୁଣି ଫେଇ,
ବାହାରୁ ନ ଥିବୁ ତୁ ଅଳତା ନାଇ;
କୁନ୍ଦ ସୁମନ ସମ ମୃଦୁଳ ହସ
ଓଠେ ତୋ ଫୁଟୁଥିବ ନାହିଁ ନାସ୍ୱଶ ! ୭ ।

ତପତ ଶ୍ୱାସେ ନାସା ତିଳ ସୁମନ
ଝାଉଁଳ ଦଟିବଣି କ ହତମାନ !!
ଅଙ୍ଗୁଳ ଚମ୍ପା ଯାଇଥିବ ମଉଳ,
କା ହୋଇଥିବ ଉର ସରୋଜ କଳ !!! ୮ ।

କଳା ଶାଢ଼ୀରୁ ତୁଟାଇଣ ଆଦର
ଅଯତ୍ନେ ଛାଉଥିବୁ ଅଙ୍ଗ ତୁ ତୋର,
ରୂପିଣୀ କବତା ରେ ! ରୂପ କାଙ୍ଗାଳ
କବ ଯାଉଛୁ କଲ ତୋ ଦଶା ଭାଳ । ୯ ।

---

୬ । ପାଣ୍ଡୁର—ଫିକା; ଅଧରବିମ୍ବ—ଅଧରରୂପ ପାଚିଲ୍ଲ କଇଁଚକାକୁଡ଼ି;
କମ୍ବୁ—ଶଙ୍ଖ ।

୭ । କାଞ୍ଚୀଦାମ—ଚନ୍ଦ୍ରହାର ( ଅଣ୍ଟାର ଅଳଙ୍କାର ); ନାସ୍ୱଶ—ଶ୍ରେଷ୍ଠ
ନାସ୍ୱୀ ।

୮ । ତିଳସୁମନ—ରାଶିଫୁଲ ( ଏଥି ସହିତ ନାକର ତୁଳନା ହୁଏ ) ;
ଉର—ଛାତି; ସରୋଜକଳି—ପଦ୍ମକଢ଼ି ।

୯ । ଅଯତ୍ନେ—ଯତ୍ନ ନ କରି; ଛାଉଥିବୁ—ଘୋଡ଼ାଉଥିବୁ; ରୂପିଣୀ—
ରୂପ ଧାରିଣୀ ।

ଧୂଳିରେ ଲୁଳି ଯାଉଥିବ ପଣତ,
ତାକୁ ବହୁବା ବଳ ହେବଣି ହତ ।
ମୁଖ ଶଶୀକି ଢାଙ୍କିଥିବ ବଉଦ
ମଞ୍ଚିରେ ପଡ଼ୁଥିବ ଅଥୟେ ପଦ । ୧୦ ।

ଝିଅ-ଜନମ ଭୋର ଉପରେ ଗଡ଼ାଇ
ଦୁଇ ଦିନର ପଥ ଯିବଇଁ ବାହୁଡ଼ି;
ତେଣା ପରାଣ ପଙ୍କଜେ ମୁହିଁ ତପନ
ଜାଣି ନ ଥିଲି ଅଛି ଅବଧି ଧନ୍ଦା । ୧୧ ।

ମୁଁ ଭାଳିଥିଲି ମୁହିଁ ଘୃତଙ୍କ ସର
କଣ୍ଠକୁ ମୋର ତୃପ୍ତ ବାରିଦ-ବାରି;
ଏବେ ବୁଝିଲି ଆନ ଚଜ ବାଞ୍ଛରେ
ଜଣା ଯେସନ, ଶଙ୍ଖ ଜଣା ଶଙ୍ଖରେ । ୧୨ ।

ଲାଜ ମଞ୍ଜୁଷାରେ ଏ ପ୍ରୀତିରତନ
ଢାଙ୍କି ତୁ ରଖିଥିଲୁ; ନ ଜାଣି ଧନ !
ହୋଇଛୁ ଅପରାଧୀ କରୁଣା କର
ପାଣିକି ଦୋଷ ଫିଙ୍ଗିଦିଅ ସୁନ୍ଦର । ୧୩ ।

---

୧୦ । ଲୁଳି ଯାଉଥିବ—ଘୁସୁରୁଥିବ ।

୧୧ । ଅବଧି—ପର୍ଯ୍ୟନ୍ତ ।

୧୨ । ବାରିଦବାରି—ମେଘର ଜଳ; ଚଜ—ପଦାର୍ଥ ।

୧୩ । ମଞ୍ଜୁଷା—ପେଡ଼ି ।

କେଶାଗ୍ର ବିଳାସୀ ତୋର କିଶୋର କବି;
କବି-ମୋହନ ! ତୋର ମନୋଜ୍ଞ ଛବି
ଚିରକାଳ ତା ଲେଖନୀର ଆହାର
ନୂଆ ସୁମନାବର ସେ ମାଳାକର । ୧୪ ।

ଗ୍ରୀବାନାଳରେ ମୁଖପଦ୍ମ ଟଳାଇ
ତୁ ହସୁଥିବୁ, କବି ସେ ଛବି ଗୁନ୍ଥି
କବିତା ଯିବ ଲେଖି କରିଛୁ ଆଶା
ହେଳାରେ ହରାଇ ଯାନ ଦେବ ରସା । ୧୫ ।

କଳା-କୁନ୍ତଳେ ନାଇଥିଲେ ଅଳକା
ସରଜୁ ଥିବ କବିଙ୍କ ତା ଅଳକା,
କପାଳ ଝଲକିଲେ ମୁକୁର ସର
ମୁଖ ଦେଖିବ ତହିଁ କବିତାନାରୀ । ୧୬ ।

ଗୋଲାପି ଗଣ୍ଡ ତଢ଼ା ଲାବଣ୍ୟସାରେ
କମ୍ପନ ସରଜିବ କବି ଅନ୍ତରେ,
କାନଝୁମୁକା ତହିଁ ବିମ୍ବିତ ହୋଇ
କବିଙ୍କ ମୋହନାରେ ନେବ ଭସାଇ । ୧୭ ।

---

୧୫ । ଗ୍ରୀବାନାଳ—ବେକରୂପ ନାଡ଼; ରସା—ପୃଥିବୀ ।

୧୬ । କୁନ୍ତଳ—କେଶ; ଅଳକା—ସୀମନ୍ତର ଅଳଙ୍କାର; ଅଳକା—ସ୍ୱର୍ଗପୁର ।

୧୭ । ସାର—ନିର୍ଯ୍ୟାସ ।

ଅରୁଣ ସର ରଙ୍ଗ ଟୋ ରଙ୍ଗାଧର,
ମାଣବକ ଶମ୍ବୁ ଟୋ ଉରପୀଠର,
ଗୁରିଅଙ୍କ-ମଧ୍ୟ ଟୋ ମରାଳଗତି
ଲବ କବାଟା ଲାଗି ଅତୁଳ ଭୂତି । ୧୮ ।

ହସିଲେ କଉମୁଦୀ ହୁଅଇ ବାଷ୍ପ,
ଭାଷିଲେ ବାଜା ଉଠଇ ରେ ବିପଞ୍ଚୀ,
ଟେକିଲେ ମୁଖ ବରଷଇ ମୟୂଖ,
ଗୁଳିଲେ ପାଦ ହଂସୀ ଲଭନ୍ତି ଦୁଃଖ । ୧୯ ।

ବସିଲେ ହୀରାକୁନ୍ଦ ସର ଲୁଛର,
ଶୋଇଲେ କଷପରେ କନକ ଗାର,
ଛାଡ଼ିଲେ ଶ୍ୱାସ ଜାତ ମଳୟ ବାତ
ଫେଡ଼ିଲେ ପକ୍ଷ୍ମ କୁବଳୟ ସ୍ଫୁଟିତ । ୨୦ ।

---

୧୮ । ମାଣବକ—ଶିଶୁ; ଶମ୍ବୁ-ଶିବଲିଙ୍ଗ; ଗୁରିଅଙ୍କ ମଧ୍ୟ-ଗୁରିଅଙ୍କ (୪)ର ଅଣ୍ଟାପରି ସରୁ ଅଣ୍ଟା; ମରାଳ—ହଂସ ।

୧୯ । ତୁ ହସିଲେ କୌମୁଦୀ ଅର୍ଥାତ୍ ଚନ୍ଦ୍ର କିରଣ ବାଷ୍ପ ହୋଇଗଲା ପରି ଦିଶେ । ତୁ ଭାଷିଲେ ଅର୍ଥାତ୍ କଥା କହିଲେ ବିପଞ୍ଚୀ ଅର୍ଥାତ୍ ବୀଣା ବାଜି ଉଠିଲା ପରି ଶୁଭେ । ତୁ ମୁହଁ ଟେକିଲେ କିରଣ ବର୍ଷା ହେଲା ପରି ଦିଶେ, ତୁ ପାଦ ଗୁଳିଲେ ହଂସୀମାନେ ନିଜ ସୁନ୍ଦର ଗୁଳିବା ତୁଚ୍ଛ ମନେ କରି ଦୁଃଖିତ ହୁଅନ୍ତି ।

୨୦ । ତୁ ବସିଲେ ହୀରାର ଗଦା ପରି ସୁନ୍ଦର ଦିଶୁ, ଶୋଇଲେ କଷଟି ପଥରରେ ସୁନାର ଗାରଟିଏ ପରି କ୍ଷୀଣ ଦିଶୁ । ତୁ ନିଃଶ୍ୱାସ ଛାଡ଼ିଲେ ମଳୟ ପବନ ପରି ସୁବାସ ପବନ ଜାତ ହୁଏ ଓ ତୁ ପକ୍ଷ୍ମ ଅର୍ଥାତ୍ ଆଖିପତା ଖୋଲିଲେ କୁବଳୟ ବା ପଦ୍ମ ସ୍ଫୁଟିତ ଅର୍ଥାତ୍ ଫୁଟିଲା ପରି ଦିଶେ ।

ଏଧନ ନାହିଁ ତୁ ମୋ ଶୋକ-ପସରା,
ତୋ ଲାଗି ବରଷିଲା ଭାବ-ଅସରା;
ଆବରତ ରେ ! ତୋଳ ଭାବ ଜୁଆର
ଧୋଇ ଦେବ ତୋ ପଦ କବିତା ମୋର । ୨୧ ।

ମୃତର ପଦଅଁବ ପଥର ଧନ,
ଧନ ଦୁଇଟା କ୍ଲେଶେ କର ଯାପନା ।
କଳା-କୁନ୍ତଳା ! ଶକୁନ୍ତଳା ତୁ ମୋର
ଦୋଷୀ ଦୁଷ୍ମନ୍ତ ଦୋଷ ପାଣିର ଗାର । ୨୨ ।

୧୯୪୫



---

୨୨ । କଳାକୁନ୍ତଳା—କୃଷ୍ଣକେଶୀ; ଶକୁନ୍ତଳା—କାଳିଦାସଙ୍କ ନାଟକର ନାୟିକା; ଦୋଷୀ ଦୁଷ୍ମନ୍ତ ଦୋଷ ପାଣିର ଗାର—ଶକୁନ୍ତଳା ତାଙ୍କ ପ୍ରେମିକ ଦୁଷ୍ମନ୍ତଙ୍କ ଅପରାଧ କ୍ଷମା କରିଥିବା ପରି ତୁ ମଧ୍ୟ ମୋ ଦୋଷ କ୍ଷମା କରିବୁ । ପାଣି ଉପରେ ଟଣା ଗାର ପରି ତାହା ଅସ୍ଥାୟୀ ହେବ ।



—୨୫—

# ରତ୍ନରେଣୁ

( ୧ )

ନଦୀ ନ ପିଏ ନିଜ ଜଳ,
ତରୁ ନ ଖାଏ ନିଜ ଫଳ,
ଶସ୍ୟ ବଢ଼ାଇ ଜଳଦାନେ
ମେଘ ତା ନ ଇଚ୍ଛେ ଆପଣେ ।
ଏ ଅଟେ ସାଧୁଙ୍କ ବେଭାର,
ପରାର୍ଥେ ଜୀବନ ତାଙ୍କର ।

( ୨ )

ପାଣି ଫୋଟକାର ସମ ଅଚର ଜୀବନ,
ଅଚର ସକଳ ଭବେ, ଧର୍ମ ସନାତନ ।

( ୩ )

ରାହୁ-ଦନ୍ତେ ଘଟେ ରବି ଶଶୀଙ୍କ ପୀଡ଼ନ,
ଅଶୀବିଷ ମାତଙ୍ଗମ ଭଜନ୍ତି ବନ୍ଧନ ।
ପ୍ରତିଭାବନ୍ତଙ୍କୁ ଘୋଟି ରହେ ଦରିଦ୍ରତା
ଦେଖି ମୁଁ ଭାଳଇଁ ବଳିଅର ଏକା ଧାତା ।

(ଭର୍ତ୍ତୃହରି)

---

୩ । ଅଶୀବିଷ—ସାପ; ମାତଙ୍ଗମ—ହାତୀ ।

( ୪ )

ସତ୍ୟବାଦୀ ସମ କେହୁ ନାହିଁ ଉଚ୍ଚସ୍ଥାନ,
କାମନା-ବନ୍ଧନ ସମ ନାହିଁ କେ ସ୍ୱାଧୀନ ।
ଦାସତ୍ୱ ସମାନ ଅନ୍ୟ ନାହିଁ ଯେ ନରକ
ହୀନାଦପି ହୀନ ସିନା ଅଟଇ ଯାଚକ ।
ଅଳସ ଜନର ପାଶେ ଦନଗତ ନାହିଁ
ଦୀର୍ଘସୂତ୍ରିତାର ବଳ ଅନ୍ୟ ଅଛୁ କାହିଁ ?
ନିରପେକ୍ଷ ନୁହେ କେହୁ ନ୍ୟାୟର ସମାନ
ଲମ୍ପଟଠୁ ବଳି ନାହିଁ ଅଧୋଗତ ଜନ ।

( ୫ )

ଯେ କଣ୍ଠ ରୁଦ୍ଧ ହେଉ ଅନ୍ୟର ପାଇଁ
ଯେ କଣ୍ଠୁଁ କାତରୋକ୍ତି ଉଠଇ ନାହିଁ ।

( ୬ )

ମୁକ୍ତିବେଦରେ ବମ୍ବ ଧଡ଼ଇ ଯଥା
ଜାତ ଜୀବନବମ୍ବ ସାହୃତ୍ୟେ ତଥା ।।

( ୭ )

ଓଡ଼ିଆ ତରୁଣ ତରୁଣୀ
ଓଡ଼ିଶା-ଆଶା-ହେମ ଖଣି ।

୧୯୩୪



୧ । ବମ୍ବ—ବୁଦ୍ବୁଦ । ୨ । ହେମ—ସୁନା ।



--୨୨--

# ବିରହ ବାରମାସି

( ରାଗ—ଶଙ୍କରାଭରଣ )

( ମଗୁଶିର )

ଧାନ-ଶୀଁଷା-ଶିରୀ ଦେଇଣ ମାସ ମଗୁଶିର
ଅସିଲ ସଜନ ! ମୋର ରଜନୀ ବାସର
କିଏ ସାରିବ ରେ କହ
ଜଳାଇ ତ ଦେଇଗଲ ବିରହର ଦାହ ।୧।

( ପୁଷ )

ଖଳାରେ ହସାଇ ଲକ୍ଷ୍ମୀ ଅସିଲ ତ ପୁଷ
ପ୍ରଚୁର ବିଭବ ତାର ହେଲା ମୋରେ ବିଷ
ଯାହା ସମ୍ପଦ ତୋ ସ୍ମୃତି
ଲୁଚି କି ପାରଇ ତାକୁ କେବେ ଅନ ବସ୍ତୁ ? ।୨।

---

୧। ଧାନ-ଶୀଁଷା-ଶିରୀ—ଧାନ ଶୀଁଷା ରୂପକ ସମ୍ପଦ; ମଗୁଶିର ମାସରେ ଧାନ ଗଛ ଶୀଁଷା ପକାଏ; ବାସର—ଦିନ; ଦାହ—ନିଆଁ ।

୨। ଖଳାରେ ହସାଇ ଲକ୍ଷ୍ମୀ—ଖଳାରେ ଧାନ ଅମଳ ହେବାରୁ ଲକ୍ଷ୍ମୀ ହସୁ ଯାଇଅଛି; ବିଭବ—ସମ୍ପଦ; ସ୍ମୃତି—ମୂରୁତ ହସ; ଲୁଚି କି ପାରଇ—ଭଲ ଲୁଚିପାରେ କି ?; ବସ୍ତୁ—ସମ୍ପଦ ।

( ମାଘ )

ଜାଡ଼ ଯେନ ବାଘ ସମ ଆସିଲା ତ ମାଘ
ମୋରେ ଅହା ଅହାର ସେ କରବ ଯେ ଅଘ,
ଅଙ୍ଗଲତାରେ ଜଡ଼ାଇ
କହ ପ୍ରାଣବନ୍ଧୁ ! କିଏ ରଖିବ ଘୋଡ଼ାଇ ? । ୩ ।

( ଫଗୁଣ )

ଫଗୁଣ ଆସନ୍ତେ ଫଗୁ ଖେଳନ୍ତେ ସକଳେ
ଗୁଣ ତୋ ସୁମରି ଗାଧୋଇଲି ଅଶ୍ରୁଜଳେ,
କହ କିଏ ଅଛୁ କାହିଁ
ଫଗୁ ବୋଲି ଅଙ୍ଗ ଯାର ଦେବ ମୁଁ ରଙ୍ଗାଇ ? । ୪ ।

( ଚଇତ )

ଚଇତ ଆସିଲା ଯେନ ଚଇତାଳି ବାଆ
ମୋ ମନ ଉଚ୍ଛନ୍ନ ହେଲେ କିଏ ହେବ ସାହା ?
ମୋର ଅନ୍ଧାର ରଜନୀ
ଦୀପ ଜାଳି ଆଲୋକିବ କିଏ ଟି ସଜନୀ ? । ୫ ।

---

୩ । ଅଙ୍ଗଲତା—ଶରୀର ରୂପକ ଲତା; ଜଡ଼ାଇ—ଲଗାଇ କରି ରଖି ।

୫ । ଚଇତାଳି ବାଆ—ଚୈତ୍ର ପବନ; ଉଚ୍ଛନ୍ନ—ଉଚାଟ; ସାହା—ସହାୟ ।

( ବୈଶାଖ )

ବଇଶାଖେ ପଣା ପିଇ ନୋହିଲ କି ତୋଷ ?
ମୋହ ସମ ବକ୍ଷେ କାର ଜଳଇ ହୁତାଶ ?
କାହା ଶେଷ ଅରେ ବନ୍ଧୁ !
ଏବା ହେଲ ନୟନରୁ ଝରି ବାରି-ବନ୍ଦୁ ? । ୬ ।

( ଜ୍ୟେଷ୍ଠ )

ଜଇଷ୍ଠ ମାସର ଝାଞ୍ଜି ହେଲେହେଁ ପ୍ରଖର
ମୋ ତପତ ଶ୍ୱାସେ ତାହା ମାନୁଛି ରେ ହାର;
ଅରେ ହୃଦୟ ଚନ୍ଦନ !
ଜଳ ପୋଡ଼ି ମରିବା ମୋ ଲଲାଟ-ଲିଖନ । ୭ ।

( ଅଷାଢ଼ )

ଅଷାଢ଼େ ମେଘର ତୁଲେ ଦାମିନୀ ପୀରତି
ଦରଶନେ ଗ୍ଲାନି ମୋର ହୁଅଇ କରତି,
କଣ୍ଠେ ବାହୁକୁ ବେଢ଼ାଇ
ଘଡ଼ଘଡ଼-ଭୀତି ବିନା ଥାଆନ୍ତୁ ଏଡ଼ାଇ । ୮ ।

---

୬ । ହୁତାଶ—ନିଆଁ; ବାରିବନ୍ଦୁ—ଲୁହ ଟୋପା ।

୭ । ଝାଞ୍ଜି—ଗରମ ପବନ; ପ୍ରଖର—ପ୍ରବଳ; ମୋ ତପତ.....ହାର—ମୋ ନାକରୁ ବାହାରୁ ଥିବା ପବନ, ତା ଠାରୁ ମଧ ଅଧିକ ବେଗରେ ବହୁଛି; ଲଲାଟ-ଲିଖନ—କପାଳର ଲେଖା ।

୮ । ତୁଲେ—ସହିତ; ଦାମିନୀ—ବିଜୁଳି; ଭୀତି—ଭୟ ।

( ଶ୍ରାବଣ )

ଶ୍ରାବଣ ଆସିଲା ଯେବେ ବରଷାର ଥାଟ,
କେକନୀ ପାଇଁ କି କେକୀ ବାରଣିଲା ନାଟ,
ତୋତେ ନ ଭୁଲିଲି ଭୋଳି
ଗଣିଲି ବସି ମୁଁ ଶୋକ-ବାରିନିଧି-ବାଲି । ୯ ।

( ଭାଦୁଅ )

ଭାଦୁଅ ଆସିଲା ଯେବେ କେତେ ପୂଜା ବ୍ରତ !!
ମାନସ ମୋ ନ ରସିଲା କାହିଁରେ ତହିଁ ତ !
ତୁ ତ ହେଲୁ ପରହାତ,
କନ୍ତ କରେ ମୋ ପାଇଁ କେ ପିନ୍ଧିବ ବରତ ? । ୧୦ ।

---

୯ । ଥାଟ—ସଉଜ, ବେଙ୍ଗ, ଡାହୁକ, ମୟୂର ଆଦି; କେକନୀ—ମାଈ ମୟୂର; କେକୀ—ମୟୂର; ବାରିନିଧି—ସମୁଦ୍ର; ଗଣିଲି...ବାଲି—ମୋ ଶୋକ ଅସରନ୍ତି ହେଲା ।

୧୦ । ପୂଜାବ୍ରତ—ଭାଦୁଅ ମାସରେ ବହୁତ ଓଷା ଉପାସ ପଡ଼େ, ମାନସ—ମନ; ହେଲୁ ପରହାତ—ଅନ୍ୟର ଘରଣୀ ହେଲୁ; କନ୍ତ—କମନୀୟ; ମନୋହର; ପିନ୍ଧିବ ବରତ—ସ୍ତ୍ରୀମାନେ ସ୍ୱାମୀର ମଙ୍ଗଳ ମନାସି ହାତରେ ବରତ ପିନ୍ଧନ୍ତି ।

( ଅଗ୍ରାଣ )

ଆସିଲା ମାସ ଅଗ୍ରାଣ କୁମାରୀଙ୍କ ପ୍ରିୟ,
ଅଜ କେ କୁମାରୀ ଭଲ ବୁନ୍ଦାଏ ଟି ଲୁହ
ମୋହ ପାଇଁ ନେବେ ରଖି
ଶଶାଙ୍କେ ମାନବ କର ହୃଦୟର ସାକ୍ଷୀ ? । ୧୧ ।

( କାର୍ତ୍ତିକ )

କାର୍ତ୍ତିକ ଅସିଲା ଯେବେ ଦାମୋଦର ପୂଜା
ସଇ ରୂପେ ଦାମୋଦରେ ଭଜଲେ ସିନ୍ଧୁଜା
ଇନ୍ଦୁ ହସିଲା ଗଗନେ
ଶୋକ-ଫୁଲେ ମାଳା କବ ରଚିଲା ଗୋପନେ । ୧୨ ।

୧୯୩୬



---

୧୧ । କୁମାରୀ—ବଢ଼ ହୋଇ ନ ଥିବା ଝିଅ; ବୁନ୍ଦାଏ—ଟୋପାଏ;
ଶଶାଙ୍କେ—ଚନ୍ଦ୍ରଙ୍କୁ ।

୧୨ । ଦାମୋଦର ପୂଜା—କାର୍ତ୍ତିକମାସରେ ସ୍ତ୍ରୀଲୋକମାନେ ଏ ପୂଜା
କର ହବାକ କରନ୍ତି; ଭଜିଲେ—ପ୍ରତି ଅସକ୍ତ ହେଲେ; ସିନ୍ଧୁଜା
—ମହାଲକ୍ଷ୍ମୀ; ଇନ୍ଦୁ—ଚନ୍ଦ୍ର; ଶୋକ-ଫୁଲେ···କବ ଏକୁଟିଆରେ
ବସି ଶୋକ କଲା ।



( ୨୭ )

# ଗୋପାଳଚନ୍ଦ୍ର ପ୍ରହରାଜ

( ୨ )

( ରାଗ କାମୋଦୀ )

ସାରସ୍ୱତ ସାଧନା ତୁଙ୍ଗ ସୌଧ ରଚନା

ତବ ଉତ୍କଳେ ସୂରିବର !

ପ୍ରଜ୍ଞାମନ୍ଦ୍ରୀ କୀରତ ଥାପିଲ ହେ ସୁକୃତ !

ଭଙ୍ଗୁର ଦେହରେ ଅମର ହେ

ହେଲ ଅଜ

କାଳକୁ କରି ପରାଭୂତ

ହୋଇଣ ଦିବ୍ୟ ପ୍ରଭାପୂତ

ଉତ୍କଳୀ ହୃଦୟର— ତୁଙ୍ଗ ପୀଠ ଉପର

ବସିଲ ସାଧକ-ଦୈବତ ହେ

ସୂରିବର ! । ୧ ।

ଭାଷା-କୋଷ-ତରଣୀ ଚଢ଼ି ଭାଷା-ତରଙ୍ଗିଣୀ

ଅଖ୍ୟାତ-ସିନ୍ଧୁ ହୋଇ ପାରି

ବହୁ ମୋହନ ବେଶ ମୋହି ସର୍ବ ମାନସ

ମଣ୍ଡିଲ ବାଣୀ-ଦରବାର ହେ

ସୂରୀବର !

---

୧ । ସାରସ୍ୱତ ସାଧନା—ସାହିତ୍ୟ ସାଧନା, ବାଣୀପୂଜା; ତୁଙ୍ଗ—ଉଚ୍ଚ; ସୌଧ—ପ୍ରାସାଦ ଅର୍ଥାତ ବିରାଟ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ; ସୂରି—ମହା ପଣ୍ଡିତ, ପ୍ରଜ୍ଞାମନ୍ଦ୍ରୀ—ସ୍ମୃତି, ଦୈବତ—ଦେବତା ।

ଥିଲ ସନ୍ତାନ ସାର୍ଦ୍ଧ କୋଟି
ଜନନୀ ପାଇଁ କି ଏହା ଛି
କଲ କେ ଅଜ୍ଞ ଜଣେ ପଡ଼େ ତ ନାହିଁ ମନେ
ତୁମ୍ଭେ ସୁବର୍ଣ୍ଣ, ଅମ୍ଭେ ମାଟି ହେ
ସୁଧୀବର ! ।୨।

କରି ତୁମ୍ଭ ପୂଜନ ହେଲେ ସରବେ ଧନ୍ୟ
ସାଧନା-ସିଦ୍ଧ ଜ୍ଞାନବାନ !
ଅଳସ ଏ ଦେଶରେ ଦୟା ବହି ହୃଦରେ
ଶିଖାଅ ଆଦର୍ଶ ମହାନ ହେ
ବନ୍ଧୁବର !
ସୌହାର୍ଦ୍ଦ ସୁଧା ବିତରକ,
ସାଧକ, ରସିକ, ଗ୍ରାହକ !
ନତ ବିଗ୍ରହ ଧାରି ସରଣୀରେ ତୁମ୍ଭର
ଗମନ୍ତୁ ଈର୍ଷୀ ଅଗ୍ରାହକ ହେ
ସୁବନୀତ ।୩।

୧୯୪୧



୨ । ତରଣୀ—ନଉକା; ଅଖ୍ୟାତ—ଅଯଶ; ମୋହନ—ମନୋଜ୍ଞ, ମନୋହର; ସୁଧୀ—ବିଜ୍ଞ, ପଣ୍ଡିତ; ସାର୍ଦ୍ଧ କୋଟି—ଦେଢ଼ କୋଟି; ସୁବର୍ଣ୍ଣ—ସୁନା ।

୩ । ନତ—ବିନମ୍ର । ବିଗ୍ରହଧାରି—ଦେହବନ୍ତ ( ଅର୍ଥାତ୍ ବିନୟର ଅବତାର ),ସରଣୀ—ବାଟ, ଈର୍ଷୀ—ଈର୍ଷୁକ ଲୋକ, ଅଗ୍ରାହକ—ଯେଉଁମାନେ ଗୁଣଗ୍ରାହୀ ନୁହନ୍ତି ।



—୨୮—

# ବିଚ୍ଛେଦ ଚଉତିଶା

[ରାଗ—କଳହଂସ କେଦାର

( ଦ୍ୱିତୀୟା ଯାମିନୀରେ ମୋ ପ୍ରାଣସହୁ--ବୃତ୍ତରେ )

କଞ୍ଜଜାତ-ଆନନା ! ଗଲୁ କାହାଇ
ଖଞ୍ଜିବ ଫୁଲ କାହା ଗର୍ଭରେ ନେଇ ?
ଗଳାରେ ହେମ-ଦାମ ଦେଇ କାହାର
ଘଟାଇବ ନୟନ-ଉତ୍ସବ ମୋର ? । ୪ ।

ଙଇଁଲୁ କହ କ୍ୱପା ଶୀତାଂଶୁ ସର
ଚଟୁଳେକ୍ଷଣୀ ବାଳା ! ଚମ୍ପକ ଗୋରି !
ଛଟେକ କାଳେ ଭଳା ବଉଦ ଭୋଳେ
ଜଳଜବାସି ! ଯେବେ ଲୁଚିଲୁ ହେଲେ । ୮ ।

---

୧-୪ । କଞ୍ଜଜାତଆନନା—ଶୋଭାରେ କଞ୍ଜ ଅର୍ଥାତ୍ ପଦ୍ମକୁ ଯାହାର ମୁହଁ ଜିଣିଛି; ହେମ ଦାମ—ସୁନାର ହାର; ଘଟାଇବ···ମୋର—ତୋ ଗଳାରେ ହାର ପିନ୍ଧାଇ ସେ ଶୋଭା ଦେଖିବା ମୋ ଆଖିର ମହୋତ୍ସବ ପରି ଆନନ୍ଦଦାୟକ ।

୪-୮ । ଶୀତାଂଶୁ—ଚନ୍ଦ୍ର; ଚଟୁଳ—ଈକ୍ଷଣୀ—ଚଞ୍ଚଳ ଚକ୍ଷୁ ବିଶିଷ୍ଟା; ଛଟେକ-ଶୀଘ୍ର, କଳଜ—ପଦ୍ମ, ଜଳଜବାସୀ—ପଦ୍ମସୁବାସୀ, ପଦ୍ମ ପଦ୍ମଗନ୍ଧା ।

ଝାଡ଼େ କପୋତ ହରିଣ ସଙ୍ଗିନୀ
ନୀଡ଼ ଲୋଡ଼ଇ ମ୍ଳାନ ଯଥା ମଉନୀ,
ଠେକ-ଦୁଃଖେ ଜୀବନ-ନୀଡ଼େ ତେସନ
ଠିକେ ପଷ ମୁଁ ଜାକି ରଖିପେଁ ଧନ ॥ ୧୨ ।

ଡମ୍ବରୁ-ମଣ୍ଡା ! କୃପାସୁଧାଙ୍ଗ୍ରିକ,
ଛାଳି ଭ୍ରମିକୁ ଯେତେ ଯେତେ ବାଣୀକ
ଅଣିମାଦ ବିଭୂତ ନରକାଂକ୍ଷିତ
ତା ପାଇ ପାସୋରିଲି ପରିଣମିତ ॥ ୧୬ ।

ଥିର ଶମ୍ପା, ଜଙ୍ଗମ ହେମ-ଲତିକା
ଦୀନ-ପ୍ରେମିକ-ହୃଦ-କୁଟୀ-ବର୍ତ୍ତିକା
ଧୀର ରତନ, ଆରାମର ନାଅଲୀ
ନୀରସ କରିଗଲୁ ସେବକ ଅଳି । ୨୦ ।

---

୯-୧୨ । ଝାଡ଼—ଜଙ୍ଗଲ; ମଉନୀ—ବାକ୍ୟହୀନ ମୂକ, ଠେକ—ଗୁରୁତର; ଠେକ…ଧନ—ମୁଁ ମଧ୍ୟ ବିରହୀ କପୋତ ପରି ସଂକୋଚ ଦଶା ଲାଭ କରିଛି; ନୀଡ଼—ପକ୍ଷୀର ବସା ।

୧୩-୧୬ । ଡମ୍ବରୁମଣ୍ଡା—ଡମ୍ବରୁ ମଧ୍ୟାର ଅପଭ୍ରଂଶ, କ୍ଷୀଣକଟୀ, ଝିଙ୍ଗୀ—ଗନ୍ତୁ, ଅଣିମାଦ ବିଭୂତି—ଯୋଗଦ୍ୱାରା ଯୋଗୀମାନେ ଯେଉଁ ସବୁ ଅଧ୍ୟାତ୍ମ ଶକ୍ତି ଲାଭ କରନ୍ତି ।

୧୭-୨୦ । ଶମ୍ପା—ବିଜୁଳି; ବିଜୁଳି ସ୍ଥିର ହେଲେ ଯେପରି ସୁନ୍ଦର ହୁଅନ୍ତା ତୁ ସେହିପରି ସୁନ୍ଦର । ଜଙ୍ଗମ—ଚଳିଥିବା; ହେମଲତିକା—ସୁନାର ଲତା; ତାହା ଯଦି ଚଳପ୍ରଚଳ ହୋଇ ପାରୁଥାନ୍ତା ତେବେ ତାହା କି ସୁନ୍ଦର ନ ହୁଅନ୍ତା !! କିନ୍ତୁ ଚିନ୍ତା କାହିଁକି—ତୁ ସେ ଚଳପ୍ରଚଳ ହେଉଥିବା ସୁନା ଲତାଟିଏ; କୁଟୀ—କୁଟୀର, ବର୍ତ୍ତିକା—ଆଲୁଅ ଜଳା; ଧୀର-ରତନ—ଧୀରଶ୍ରେଷ୍ଠ; ଆରାମ—ବଗିଚା ।

ପୀୟୂଷସ୍ୱାଦ କର ଯେ ବରତନ
ଫୁଲ୍ଲ-ପଙ୍କଜ-ପଦେ ଚିର ସେବନ—
ବର ଥାଅନ୍ତ ଲୋଡ଼ି, ମୁହ୍ନ ତୁ ତାରେ
ଉର୍ମାଙ୍ଗି ! ଗଲୁ ଚାଲି ପର ଲୋକରେ । ୨୪ ।

ମଉନେ ମୋତେ କନ୍ଦାଇବାର ପାଇଁ
ଯତନେ ପ୍ରୀତିଲତା ଥିଲୁ ବଢ଼ାଇ ।
ରସାରେ ଥାଉଁ, ଜାଣୁଁ ଥିଲେ କି ଦୂରର
ଲାବଣ୍ୟମୟି ! ରାଣୀ ଥିଲୁ ତ ଉରେ । ୨୮ ।

ବିରହ ଦାବ ଦାହେ ହୃଦ ଜଳାଇ
ଶୀତାଂଶୁମୁଖି ! ଶୋକତରୁ ଫଳାଇ
ଚମ୍ପାଙ୍ଗ ଛପାଇଲୁ କାଳ-ଭିଟିରେ
ସପନେ ତଥାପି ତୁ ପୁଚ୍ଛିଲୁ ମୋତେ । ୩୨ ।

'ହେ ବନ୍ଧୁ ! ଅଛି କି ପୂର୍ବ ପରି
ହୃଦ ସଂପୁଟେ ପ୍ରୀତି-ରତନ ଭରି ?'' । ୩୩ ।
"ଚୂର୍ଣ୍ଣମାନସା ନୁହଁ" କଲି ଉତ୍ତର
"ଷଦ୍ବୃହ୍ନି ଜଳେ ମୋ ପ୍ରୀତି ସାଗର" । ୩୪ ।



---

୨୧-୨୪ । ପୀୟୂଷସ୍ୱାଦ—ଅମୃତପରି ମଧୁର ସ୍ୱାଦ; ବରତନ—ମୂଲ; ଫୁଲ୍ଲ—ଫୁଟିଥିବା; ପଙ୍କଜ—ପଦ୍ମ; ଚିରସେବନ-ବର—ଚିରକାଳ ସେବା କରିବା ରୂପ ବର; ଉର୍ମ—ସୁନା; ଉର୍ମାଙ୍ଗୀ—ସୁନାବରଣୀ ।

୨୫-୨୮ । ରସା—ପୃଥିବୀ; ଉରେ—ହୃଦୟରେ ।

୨୯-୩୨ । ଦାବଦାହ—ବଣପୋଡ଼ା ନିଆଁ; ଶୀତାଂଶୁମୁଖୀ—ଚନ୍ଦ୍ରମୁଖୀ; ଚମ୍ପାଙ୍ଗ—ଚମ୍ପାଫୁଲ ବର୍ଣ୍ଣ ଦେହ ।

୩୩-୩୪ । ସଂପୁଟ—ପେଡ଼ି; ଚୂର୍ଣ୍ଣ ମାନସା—ଦୁଃଖିତା; ଷଦ୍ବୃହ୍ନି—ଅଗ୍ନିସ୍ତୁ, ଅବନାଣି ।

(୨୯)

# କବିବର ରାଧାନାଥ ରାୟ

( ୨ )

( ରାଗ କାମୋଦୀ )

ଆଜ ତ ଅସ୍ତୁ ଆସି    ଚଇତ୍ର ପୌର୍ଣ୍ଣମାସୀ
ଚନ୍ଦ୍ରିକା ରଥେ ଅବତରି
ଆସ ଦେବଲୋକରୁ    ନବ ଉତ୍କଳ ସୃଷ୍ଟି !
ରସପଣ୍ଡିତ ଅଶରୀରୀ ହେ
ରାଧାନାଥ !

କୌମୁଦୀ ସ୍ରୋତେ ଅବଗାହି
ଶୋଭା ମଞ୍ଜୁଷା ଧରି ଫେରି
ତରଳା ମଧ୍ୟମଣି    ହାର ଗଳାରେ ଦେଇ
ଅସ୍ତୁ ଉତ୍କଳ ପଥ ଚାହିଁ ହେ
ରାଧାନାଥ ! । ୧ ।

---

୧। ଚନ୍ଦ୍ରିକା—ଚନ୍ଦ୍ରକିରଣ; ଅଶରୀରୀ—ଦେବଦେହଧାରୀ; ମଞ୍ଜୁଷା—ପେଡ଼ି; ମଧ୍ୟମଣି—ହାରର ପଦକ; ତରଳା ମଧ୍ୟମଣି ହାର—ଯେଉଁ ହାରରେ ତରଳା ପଦକ ଅଛି।

ମୋହିତା ହୋଇ ଶୁଣେ ତବ ଲେଖଣୀ-ମୁଖେ
ସୁଖର ବୀଣ ଭଳେ ବାଣୀ
କଳ୍ପନା ରଙ୍ଗେ ରଞ୍ଜି ଅତୀତ-ଗାଥା-ଶଙ୍ଖ
ଥାପିଲ ଦେଶ ଅଙ୍ଗେ ଅଣି ହେ
ରାଧାନାଥ !
ଗଲ ଯେ ଏତେ କାଳ ବହି
ତବ ସମାନେ କବି କାହିଁ ?
କାହିଁ ପୁଣି ପ୍ରତିଭା ପ୍ରଭାବ ଯାହା ପ୍ରଭା
ନନ୍ଦିତ କରିବ ଏ ମହୀ ହେ
ରାଧାନାଥ !। ୨ ।
କଳ୍ପନାଲୋକସ୍ରଷ୍ଟା ରସରାଜ୍ୟବିହାରୀ
ଥିଲ କି ଅହେ କବିବର !
ପ୍ରତ୍ୟାଣାବଧି ତବ ଭାଷା-ଅବର୍ଣ ଯବ
ପ୍ରମାଣେ ଜଳ ଏ ଦେଶର ହେ
ରାଧାନାଥ !
ହୋଇଛୁ ବୋଲି ନୁହେ ମନେ
ଦୀନତା କରିଲ ବ୍ୟାକୀନେ
ଗ୍ରାସଇ ଜାତି ପ୍ରାଣ ଋଦ୍ଧି ତୁମ୍ଭ ସମାନ
ଦେବାକୁ ଆଉ ନାହିଁ ଜଣେ ହେ
ରାଧାନାଥ !। ୩ ।

---

୨ । ବାଣୀ--ସରସ୍ୱତୀ; ନନ୍ଦିତ--ଅହ୍ଲାଦିତ ।

୩ । ପ୍ରତ୍ୟାଣାବଧି--ପିବା ଦିନଠାରୁ; ଯବପ୍ରମାଣେ--ଟିକିଏ ହେଲେ ସ୍ୱାଧୀନତା......ଜାତିପ୍ରାଣ--ସାହିତ୍ୟ ଦିଗରୁ ଜାତି ଗରିବ ହୋଇ ଯାଉଛି; ଋଦ୍ଧି--ସଂପଦ ।

'ମହାଯାତ୍ରା', 'ଚିଲିକା', 'ଦରବାର', 'ନନ୍ଦିକା'
'ବିବେକୀ', 'ଯଯାତି କେଶରୀ',
'ଉର୍ବଶୀ,' 'ଉଷା', 'ମେଘ ଦୂତ' ସମ ବିଭବ
ଭାରତୀ ଚନ୍ଦ୍ରା-ତଟରେ ଉଭି ହେ
ରାଧାନାଥ !

ଦେବାକୁ ସମଧର୍ମା ଛବି
ଅନ୍ତରେ ଏ ଦେଶେ ଉଦ୍ଭବ
ତୁଅନ୍ତୁ କବିଗଣ ! କର ଏ ଶୁଭାଶିଷ
ଯାଚୁଁ 'କେଦାରପୁର'ଭବ ହେ
ରାଧାନାଥ ! । ୪ ।

ଆଜି ଏ ମୁରତିରେ ଏ ମାଧବ ରାତିରେ
ସଞ୍ଚରୁ ପରାଣ ତୁମ୍ଭର
ଭାସ୍ୱର ଲଲାଟରୁ ନିଶି ଦିବସ ଝରୁ
ପ୍ରେରଣାଧାର ଅନିବାର
ହେ କବିଗୁରୁ !

---

୪ । ଯାଚୁ — ମାଗୁ ; 'କେଦାରପୁର'ଭବ — କେଦାରପୁର ଗାଆଁରେ ଯେ ଜନ୍ମ ହୋଇଅଛନ୍ତି ଅର୍ଥାତ୍ ରାଧାନାଥ ।

ଉତ୍କଳ ଜନନୀ ଦୁଲାଳ !
ଥୋଇ ଭକତି-ସୁମ-ମାଳ
ସୁଧା ଦୀଧିତି ସମ ମୟୂଖ ମନୋରମ
ମାନସ କୁଞ୍ଜେ ନତ ଭାଳ
ହେ କବିବର ! । ୪ ।

୧୯୩୮ (୪୩)



—୩୦—

## ପଲ୍ଲୀ ବଧୂ

( ରାଗ—ଶଙ୍କରାଭରଣ )

ଉତ୍କଳର ପଲ୍ଲୀ ବଧୂ ! ଅୟି କାନ୍ତିମତି !
କୋଳେ ମା ! ଖେଳାଇ ବଢାଉଛ ଏହୁ ଜାତି
ମୂର୍ତ୍ତିମତୀ ସହିଷ୍ଣୁତା !
ସ୍ନିଗ୍ଧ ଶୋଭା ଅଙ୍ଗେ କେତେ ଦେଇଛୁ ବିଧାତା !! ।୧।

ଶ୍ରୀମୁଖ-ମଣ୍ଡଳ ଅହା ସାରଲ୍ୟର ଧାମ
ନିର୍ଭରେ ସତତ ତହିଁ କରଇ ବିଶ୍ରାମ
ଲଜ୍ଜାରାଣୀ ମଧୁମୟୀ
ଯା ଦେଖି ତୋ ସ୍ମିତ ହସ ଭୁବନବିଜୟୀ ।୨।

---

୪ । ଏ ମୂରତି—ଶ୍ରୀରାମଚନ୍ଦ୍ର ଭବନରେ ସ୍ଥାପିତ ମୂର୍ତ୍ତି; ମାଧବ ରାତି—ମଧୁ ଅର୍ଥାତ୍ ବସନ୍ତକାଳର ରାତି; ଭାସ୍ୱର—ଉଜ୍ଜ୍ୱଳ; ଦୁଲାଳ—ପ୍ରିୟ ସନ୍ତାନ; ସୁମ—ପୁଷ୍ପ; ସୁଧାଦୀଧିତି—ଚନ୍ଦ୍ର, ମୟୂଖ—କିରଣ ।

୨ । ଧାମ—ନିବାସ; ନିର୍ଭରେ—ନିଶ୍ଚିନ୍ତରେ; ସ୍ମିତ—ମୁରୁକି ହସ ।।

ଜଳାର ଅଶନ ସମ ବକ୍ଷେ ମଧୁ ବହି
ବକ୍ଷ ତୁମ୍ଭ କବି-ଶିଳ୍ପି-ପ୍ରେରଣାର ଗେହ
କୋଣାର୍କେ ଆଦରଣ
'ଭଞ୍ଜ'-'କବିରବି'-ଗୀତ-ଜୀବନ-ସର୍ବସ୍ୱ । ୩ ।
ମସ୍ତକ-ସିଂଗଡ଼ିଚନ୍ଦ୍ର, ସୀମନ୍ତ-ଅଳକା
ଚନ୍ଦ୍ରହୁମ୍ପୀ ଯେଣ୍ଣ ନେତ୍ରାନନ୍ଦ-ସିନ୍ଧୁ-ରାକା
ନୋଥ, ଦଣ୍ଡୀ ନାସିକାର
କଳାଜୀବି-ଉତ୍କଳୀୟ-ମାଦକ-ସମ୍ଭାର । ୪ ।
ଭୂଷଣର ଭୂଷା ତୁମ୍ଭେ ଅୟି ଶୋଭାବତି !
ବୀରଦେଶ-କୁଳ-କମଳିନୀ ସାଧ୍ୱୀ ସତୀ
ଦେଶ-ବୀରତ୍ୱ-ଐତିହ୍ୟ
ଆଶ୍ରିଲର ପରି ବସେ ତୁମ୍ଭର ବିଗ୍ରହ । ୫ ।

---

୩ । କଳାର ଅଶନ—କଳାର ଖାଦ୍ୟ; ବକ୍ଷ ତୁମ୍ଭ······ତୁମ୍ଭ ବକ୍ଷରୁ କବି ଓ ଶିଳ୍ପୀମାନେ ପ୍ରେରଣା ପାଆନ୍ତି; ଗେହ—ଘର, କୋଣାରକେ ଆଦରଣ—କୋଣାର୍କ ଶିଳ୍ପରେ ତୁମ୍ଭ ବକ୍ଷର ନକଲ କରି ଯାଇଛି; "ଭଞ୍ଜକବି ରବି"······ଉପେନ୍ଦ୍ର ଭଞ୍ଜ ଓ କବିସୂର୍ଯ୍ୟଙ୍କ କବିତା ଲେଖିବାକୁ ତୁମ୍ଭର ବକ୍ଷରୁ ପ୍ରେରଣା ମିଳିଛି ।

୪ । ସିଂଗଡ଼ି ଚନ୍ଦ୍ର, ଅଳକା ଚନ୍ଦ୍ରହୁମ୍ପୀ ଆଦି—ସୁପ୍ରଚଳିତ ଅଳଙ୍କାର; ରାକା—ପୂର୍ଣ୍ଣିମା; ମାଦକ ସମ୍ଭାର—ଉନ୍ମାଦ କରୁଥିବା ଜିନିଷ ।

୫ । ଭୂଷଣର ଭୂଷା ତୁମ୍ଭେ—ତୁମ୍ଭର ଶୋଭା ଏପରି ଯେ ଭୂଷଣ ଅର୍ଥାତ ଅଳଙ୍କାରମାନେ ତୁମ୍ଭର ଶୋଭା ବଢ଼ାନ୍ତି କଅଣ ବରଂ ସେମାନଙ୍କର ତୁମ୍ଭେ ଭୂଷା ବା ଅଳଙ୍କାର ହୋଇ ଶୋଭା ବଢ଼ାଉଛ; କୁଳ-କମଳିନୀ—କୁଳ ଲକ୍ଷ୍ମୀ; ଐତିହ୍ୟ—ପରମ୍ପରା; ବିଗ୍ରହ—ଶରୀର; ତୁମ୍ଭ ଶରୀରରେ ଏ ଦେଶ ବୀରତ୍ୱର ପରମ୍ପରା ବାସ କରି ରହିଅଛି । ଅର୍ଥାତ୍ ତୁମ୍ଭେ ବୀରା ଓ ବୀରଜନନୀ ।

ନବୀନ ଉତ୍କଳେ କୋଳ-ଦୋଳରେ ଝୁଲାଇ
ପାଳିବାର ଭାର ତୁମ୍ଭ କରେ ଅଛୁ ରହି
ପୂଜା-ବ୍ରତ-ଗତ-ପ୍ରାଣା !
ପରନ୍ଧ୍ର-ଚନ୍ଦ୍ରନେ ତୁମ୍ଭ କାହିଁ ଗୋ ତୁଳନା ? । ୬ ।

ସୁଦୀନ କୁଟୀରେ ତୁମ୍ଭେ ତାମସ ହାରିଣୀ
ପ୍ରାସାଦେ ବିଳାସ-ରଶ୍ମି ସଂଯତ କାରିଣୀ
ସର୍ବଂସହା ସ୍ୱରୂପିଣୀ
ଅନୁରାଗି-କାନ୍ତ-ହୃଦ-କଉସ୍ତୁଭ-ମଣି । ୭ ।

୧୯୩୪



୬ । ପୂଜାବ୍ରତଗତ ପ୍ରାଣା—ପୂଜା ଓ ବ୍ରତ ନିରତା; ପରନ୍ଧ୍ର ଚନ୍ଦ୍ରନେ—ପରଲୋକ ବିଷୟରେ ସାବଧାନ ହେବାରେ ।

୭ । ତାମସ ହାରିଣୀ—ଅନ୍ଧାର ଅର୍ଥାତ୍ ଦୁଃଖ ଦୁଶ୍ଚିନ୍ତା ଦୂରକର; ରଶ୍ମି—ଲଗାମ; ସର୍ବଂ ସହାସ୍ୱରୂପିଣୀ—ସବୁ ଜଞ୍ଜାଳ ସହୁଥିବା ମାଆ ବସୁଧା ତୁଲ୍ୟ; ଅନୁରାଗୀ—ପ୍ରେମି; କଉସ୍ତୁଭ ମଣି—ବିଷ୍ଣୁଙ୍କ ହୃଦ ଦେଶର ବିରାଜୁଥିବା ମଣି ବିଶେଷ, ଏଠାରେ ଶ୍ରେଷ୍ଠଭୂଷଣ ।



—୩୧—

# ମାଲତୀପ୍ରତି ବସନ୍ତ

ରଙ୍ଗ—କାମୋଦୀ

( ଦେଖି ନବକାଳକା ବକାଳକା ମାଳକା—ବୃତ୍ତରେ )

ମାଲତି ! ତୋ ପତର ପାଇଅଛୁ ଉତ୍ତର
ଦେବାକୁ ନାହିଁ ବାହୁରଇ
କେଉଁ ଭାଷାରେ ତୋର ବିଶ୍ୱାସ ହୃଦୟର
ଉପୁଜାଇବି ନ ଜାଣଇ ରେ
ସୁକୁମାରି !
ପୋଖରୀ କୂଳରେ ସେ ଦିନ
ସଞ୍ଜେ ଯେ ଭଇଁ ଥିଲୁ ଜହ୍ନ
କାଖେ ଧରି କଳସୀ ତୁ ଅରେ ମଦାଳସି !
ତୁଟଠ ରଜ୍ଜଲ ତା ସମାନରେ
ଶୋଭିବତି ! । ୧ ।

କାହାକୁ ମୁଁ ଭଜିବ        କାହାକୁ ବରଜିବ
ମୋରେ ତା ପଇଠିଲା ନାହିଁ
ଶେଷେ ମଞ୍ଜୁ-ଜହ୍ନରେ        ମଜ୍ଜିଲି ! ନୟନରେ
ଜମା ପିଛୁଡ଼ା ନ ପକାଇ ରେ
ମଦାଳସି !
ପୋଖରୀ-ଭରା ଜଳ ସବୁ
କରୁଣା ଅନ୍ତରେ ତୋହର
ପାଲଟ ଗୃହାଣିରେ        ତୋ ହୃଦ-କାହାଣୀରେ
ଗଲି ନୀରବେ କହି ଗୋର ! ରେ
ଛଟକନ !। ୨।

ଝୁଣ୍ଟିବାର କାରଣ        ନ ଥାଇ ତୁ ଝୁଣ୍ଟିଣ
ଭାଙ୍ଗିଲୁ ତୋ ପୂର୍ଣ୍ଣ କଳସୀ
ଦୂରେ ଥିଲା ଲଳିତା        ମୋ ମାତୁଳ ଦୁହିତା
ଦୁଷ୍ଟା ସେ କହିଦେଲା ହସିରେ
ରସିକନ !
"ଅଥରପୀ ତୁ ହହିଁ ପାଇଁ
ଲଜ୍ଜିତା କି ତା ନ ଜାଣଇଁ

---

୨। କାହାକୁ·····ବରଜିବ—କେଉଁ ଜହ୍ନଟିକୁ ଛାଡ଼ି କେଉଁ ଜହ୍ନଟି ପ୍ରତି ଅଗ୍ରହୀ ହେବ; ମଞ୍ଜୁ ଜହ୍ନ—ଅର୍ଥାତ୍ ତୋତେ; ଜମା—ଏକାବେଳକେ; ପାଲଟ—ମୋ ଗୃହାଣିର ବଦଳରେ ତୁ ଦେଉଥିବା ଗୃହାଣି।

୩। ଅଥରପୀ—ଅସ୍ଥିରପଦା (ଯେ ଭୂଇଁରେ ଥୟ କରି ଗୋଡ଼ ପକାଇ ପାରେ ନାହିଁ।)

ମୁହିଁ ସଞ୍ଜବେଳରେ ମାଛଧରା କାଳରେ
ଭଲ ସାଜକୁ ଟୋପଟୋଣି ଲେ
ନାତମ୍ବିନ ! । ୩ ।

ତୁମ୍ଭ ଦୁହିଁଙ୍କ ହସ ଦେଖି ହେଲି ହରଷ;
ଶତଦ୍-ଜଅଁସର ଦିନ
ପିଠାଥାଳୀ ତୁ ଧରି "ଲକ୍ଷ୍ମୀ" ଡାକ କରି
ଛଚଳେ ମଣ୍ଡିଲୁ ଅଗଂନରେ
ଶମ୍ପା-ଗୋରି !
ପଡ଼ିଲୁ ହାବୁଡ଼େ ମୋହର
ସାହସ ବାନ୍ଧି ମୁଁ ଗ୍ଳତର
ଗୋଲାପ ଫୁଲ ତୋଳି ଗୁଞ୍ଜିଟର ତୋ ଛଇଲ !
ମଣ୍ଡିଲି ମୁହୂର୍ତ୍ତ ଭିତର ରେ
ନତମୁଖି ! । ୪ ।

କେହ୍ନ ନ ଥିଲେ ପାଶେ ତୋହ ମୋହ ନିଃଶ୍ୱାସେ
ମିଶାଇ, ତୋ ଲବା-ଅଧରେ
ଖୋଜନ୍ତେ ଛଣା ସୁଧା ଏ ନୀରସ ବସୁଧା
ହେଲା ଅମରାବତୀ ମୋରେ ରେ
ଥିବ ମନେ
ଲୁଚିଲୁ ଅସ୍ଫୁଟ କଥନେ
"ତେମେ ଚି ଏଡ଼େ ଦୁଷ୍ଟ ଜଣେ"
କି କହିବ ମାଳତି ! ଜାଣି ନେଲି ମୋ ଗ୍ଲତି
ହେଲେ ଏ ପଦକ ବଚନେ ରେ
ରାଣୀ ମୋର ! । ୫ ।

୪ । ଅଗଂନ—ଅଗଣା; ଶମ୍ପାଗୋରି—ବିଦ୍ୟୁଦବର୍ଣ୍ଣା, ଯାହା ବର୍ଣ୍ଣ ବିଜୁଳି ରଙ୍ଗ ପରି ।

ଖୁଦୁରୁକୁଣୀ ଦିନ    କୁସୁମ ତୁ ଚୟନ
କରି ବନାଉଥିଲୁ ହାର
କେବେ ନ ଥିଲେ ତହିଁ    ପଛଅଡ଼ୁ ମୁଁ ଯାଇଁ
ବୁଜିଲି ନୟନ ତୋହର ରେ
ହରିଣାକ୍ଷି !
ଭିଟିଲୁ ଲଳିତାର ଭାବ ।
ଏଠାରୁ ଯାଅ ହେ ପଳାଇ
ଲଳିତା ଏହୁକ୍ଷଣି    ଅସିବ ଫୁଲୁ ଦେଖି
କାହିଁ ରଖିବ ମୁହଁ ମୁହଁ ହେ
ଦୁଷ୍ଟଜନ ! । ୧ ।

ମୁଁ କହିଲି ଏ ହାର    ଗଲେ ନ ଦେଲେ ମୋର
ନଷ୍ଟେଁ କରିବ ଲୋକହସା;
ଭିପିଲୁ ମାଆଙ୍କର    ପାଇଁ ଗୁନ୍ଥା ଏ ହାର
ଏଥିକୁ କପାଁ କଲ ଅଣା ହେ
ଦୁରୁଦଣ୍ଡ !
ବଳେ ତୋ ବାହୁ-ଚମ୍ପା-ହାର
ପିନ୍ଧିଲି ଗଳାରେ ମୋହର
ଲୁଟ କର ଶୀତଳ    ଜାପିଲି ହୃଦସ୍ଥଳ
କେତେ ନବାଡ଼େ ହେତୁ କରରେ
ତୁଳା-ଅଙ୍ଗି ! । ୨ ।

କୁମାର ପୂର୍ଣ୍ଣମୀରେ ଫୁଲ୍‌ରାଣୀ ବେଶରେ
ଲଳିତା ସଙ୍ଗେ ଉପବନେ
କରୁଥିଲି ବିହାର, ମନ ଜାଣି ମୋହର
ସେ ଗଲା ଛଳି, ଅଜ କେଉଁଣେ ରେ,
ଏକାକିନୀ !
ବୋଇଲି ଦେବ ମୁଁ ଅଲତା
ପଦ ଦେଖାଅ ରସଲତା !
ହୋଇଣ ହସହସ ବୋଇଲି କହୁ କିସ
ଏ କେଉଁ ଅପାଠକ କଥା ରେ
ସୁଧାହାସି ! । ୮ ।

ମୁଁ କରନ୍ତେ କଟାକ୍ଷ ପଡ଼ି ମୋ ପାଦତଳ
ଭାଷିଲି ଲାଜେ ଯିବି ମରି,
ଅସିଲେ ସେ ଲଳିତା ପଚାରିବ ମୋ କଥା
ଦୁଷ୍ଟା ଯେ କରିଦେବ ପ୍ରକଟ ହେ.
ଯାଅ ବେଗେ,
ତୁମ୍ଭର ମୋହର ଏ ଭେଟ
ନ ହେଉ କାଲି ପରଘଟ
ମୁଁ ଯେ ଗରିବ ଝିଅ ତୁମେ ଧନୀକ ପୁଅ
ମୋ ପାଇଁ ବନ୍ଧୁ ! ରଖ ବାଟ ହେ
ଶୋଭାକର ! । ୯ ।

---

୮ । ଛଳି—ଛଳନା କରି; ବାଆଁରେଇ ହୋଇ; ଅପାଠକ କଥା—ଅଯୁକ୍ତସଙ୍ଗତ କଥା ।

୯ । ପ୍ରକଟ—ପ୍ରକାଶିତ; ଶୋଭାକର—ସୌନ୍ଦର୍ଯ୍ୟର ଖଣି ।

ଶୁଣି ତୋହ ବଚନ     କର ଲୁହ ମୋଚନ
ଶୋକେ ଅଧୀର ହୋଇ କର
କପଟ ପୁଣି ତୋର     ଅଛୁ ମୋହ ଉପର !
ଭାଷିଲି ଲୁହ ନେଏ ଭରରେ
ଯେତେବେଳେ
ଭାସିଣ ତୁହ ଅଶ୍ରୁଜଳେ
ବାହୁ ତୋ ଛନ୍ଦ ମୋହ ଗଳେ
ଭାଷିଲୁ 'ନାସ୍ତମନ     ପାଠ ପଢ଼ି ନ ଜାଣ
ଅପାଠ ପାଠଗଛେ ଫଳେ କି
ପ୍ରିୟତମ' ! । ୧୦ ।

ଶାନ୍ତ ହୁଅନ୍ତେ ମୁହିଁ     ପଳାଇ ଯାଇ ତୁହ
ଲଳିତା ସହିତେ ଅଳତା
ନାଇ କ୍ଷଣକ ପରେ     ଆସି ଉପବନରେ
ମିଳିଲୁ ଥିର ବିଦ୍ୟୁଲ୍ଲତା ରେ
ଲାଜକୁଳି !
ମୋ ଲୁହେ ସେ ଲୁହ ମିଶାଇ
କାନ୍ଦନ୍ତୁ ଗଣ୍ଡେ ଗଣ୍ଡ ଦେଇ
ସେ ମୋର ମୁହିଁ ତାର     ଭିନ୍ନ କରିବା ନଗି
ମହୀମଣ୍ଡଳେ ନାହିଁ ରହି ରେ
ପ୍ରୀତିବନ୍ତ ! । ୧୧ ।

---

୧୧ । ଥିର ବିଦ୍ୟୁଲ୍ଲତା—ବିଜୁଳି ସ୍ଥିର ହୋଇ ରହିଲେ ଯେପରି ଦିଶନ୍ତା ସେପରି ଦିଶୁଥିବା ସ୍ତ୍ରୀ ।

ଏ ବରଷ ରଙ୍ଗରେ        ପୁଣି ଫୁଲ ସଙ୍ଗରେ
ମଣ୍ଡି ହୋଇ ଶୋଭୁରଣି !
ଲଳିତା ସଙ୍ଗେ ଫଟୋ     ଉଠାଇ ମୋ ନିକଟେ
ପଠେ ତୁ ପେଷିକୁ ସିହାଣିରେ !
ବରଧ୍ୱଣି !
ଅବା ସେ ମନ ଜାଣି ମୋର
ବାହୁଛୁ ଏହୁ ଉପକାର
ବସନ୍ତ ମାଳତୀର         ଯୋଗ ନୁହେ ଭଙ୍ଗୁର
ଭର ସଂଶୟ ମନୁ ଦୂରରେ
ପ୍ରାଣମଣି !। ୧୨ ।

ଏମ୍. ଏ. ପରୀକ୍ଷା ଦେଇ     ନିକଟେ ଯିବି ମୁହିଁ
ତୋ ବିନେ ଗ୍ରୀଷ୍ମ ଅବକାଶ
କଲେଜ ହଷ୍ଟେଲରେ       ସବୁ ସୁଖ ଭିତରେ
ଛଚେ ସପନେ ହା ହୁତାଶ ରେ
ଯଉବନା
ଏଠାରେ ପୀଉଷ କବିତା
ବହାଇ ନାହିଁ ମଧୁରତା
ମଳା-ମୁକୁର-ମୁହିଁ !      ଝୁରଇଁ ମୁଁ ସେ ମହିଁ
ତୋ ପଦରଜେ ଯା ଭୂଷିତା ରେ
ଶୋଭୁଧୀମା !। ୧୩ ।

---

୧୩ । ମଳାମୁକୁରମୁହିଁ—ପୋଛ ହୋଇଥିବା ଦର୍ପଣ ପରି ଝଟକୁଥିବା ମୁହଁ ଯେଉଁ ରମଣୀର; ପଦରଜ—ପାଦଧୂଳି ।

ଲଫାଫାରେ ସେ ଧୂଳ ଦେଖୁ, ମୁଁ ହୋଇ ବୋଲ
ମଜ୍ଜିବ ପରମ ସୁଖରେ,
ମୋ ଉପରେ ସଂଶୟ ଛାଡ଼ି ଲେଖିଲେ ବୋହ
କଣ୍ଠ ରୋଧର କଷ୍ଟତରେ ରେ
ବ୍ୟବେକାନ !
ରଖିଛୁ ବ୍ଲାଉସ ତୋହର
ଅଭୟ-କବଚ ତା ମୋର
ଉପେନ୍ଦ୍ର, କାଳିଦାସ- କବିତା ଧୂତ ନାଶ
କଲେ ତା ବେଶଙ୍କ ଭରର ରେ
ଶୋଭାବର୍ଣ୍ଣି ! । ୧୪ ।

ପ୍ରୀତରୁ ବଡ଼ ହୋଇ ଜଗତେ କି ଅଛଇ
ଯାନା ପ୍ରେମିକା ପଦାତଟେ
ମଣିମାଣିକ୍ୟ ଭର ନୃପ ମୁକୁଟ ପର
ଧୂଳିଧୂସର ହୋଇ ଲୋଟେ ରେ
ଶୋଭାବର୍ଣ୍ଣି !
ତୁ ରାଜରାଜେଶ୍ୱରୀ ମୋର
କରଦ ପ୍ରଜା ମୁଁ ମାତର
ତୋ ଚରଣ ସ୍ମରଣ ଚକ୍ରବରତପଣ
ମୋତେର ଅରପ ସ୍ୱମାବର ରେ
କୃପାତେ ! । ୧୫ ।

୨୪୪୫

୧୪ । କଷ୍ଟତରେ—ଅକ୍ଲେଶରେ ।
୧୫ । ତୋ ଚରଣ ସ୍ମରଣ ଚକ୍ରବରତପଣ—ତୋ ପାଦ ମନ୍ଥାଳ ଦେଇ ସମ୍ରାଟ ହେବାର ଭାଗ୍ୟ ।

—୩୨—

# ମୋ ଦେଶ !

ରାଗ, ତୋଡ଼ି ପରଜ; ଅଠତାଳ

( 'ଝଗଡ଼ ମାଙ୍ଗ ହେଲ ହେ ଶ୍ୟାମ' ବୃତ୍ତରେ )

ମୋ ଦେଶ ଦେଖ ସେହି ରୂପକୁ
କବି-ହୃଦାନନ୍ଦ-ରସ-କୂପକୁ । ଘୋଷା ।

ମଣ୍ଡିବାକୁ ଯାହା ସାଧବ-କୁଳ
ବୋଇତେ ଉଡ଼ାଇ ଥିଲେ ଚମ୍ବଲ । ୧ ।

ଖାରବେଳ ଯାହା ଦେଖି ନୟନେ
ଚଳିଲେ ମଗଧେ ସେନା ଗହଣେ । ୨ ।

---

୦ । କବି-ହୃଦାନନ୍ଦ-ରସ-କୂପ—କବିମାନଙ୍କ ହୃଦୟକୁ ଆନନ୍ଦ ଦାୟକ ।

୧ । ସାଧବକୁଳ—ପ୍ରାଚୀନ କଳିଙ୍ଗର ସଉଦାଗରମାନେ; ବୋଇତ—ଜାହାଜ; ଚମ୍ବଲ—ପତାକା ।

୨ । ଖାରବେଳ—ପ୍ରାଚୀନ କଳିଙ୍ଗର ଭାରତବିଜୟୀ ସମ୍ରାଟ । କଳିଙ୍ଗର ଅପମାନ ଯୋଗୁଁ ସେ ମଗଧ ଉପରେ ପ୍ରତିଶୋଧ ନେଇଥିଲେ ଏବଂ ମଗଧ ସମ୍ରାଟ କଳିଙ୍ଗରୁ ନେଇ ଯାଇଥିବା ତୀର୍ଥଙ୍କର ମୂର୍ତ୍ତି କଳିଙ୍ଗକୁ ଫେରାଇ ଆଣିଥିଲେ । ସେନା ଗହଣେ—ସଙ୍ଗରେ ସୈନ୍ୟ ସାମନ୍ତ ନେଇ ।

କେଶରୀ-ଭୂପତି-କୀରତି-ଜାଳ
ମୟୂଖେ ହୋଇଲା ଯାହା ଧବଳ । ୩ ।

ଅନଙ୍ଗଭୀମ ଅବନୀ ନାୟକ
କଲେ ଯା ଗୌରବ ବିଶ୍ୱ ବ୍ୟାପକ । ୪ ।

ନରସିଂହ ଭୂପ-ମନ୍ଦିର-ବର
ହେଲା କଉସ୍ତୁଭ ଯାହା ହୃଦର । ୫ ।

କପିଳେନ୍ଦ୍ର ବଢ଼ାଇଲେ ଯା ଶିରୀ
ଅସିରେ ବଇରି ଉରସ ଚିରି । ୬ ।

କାଞ୍ଚୀ-କେମା-ହୃଦ-କୁମୁଦ-ଇନ୍ଦୁ
ଉଛୁଳାଇଲେ ଯା ସୁଯଶ-ସିନ୍ଧୁ । ୭ ।

---

୩ । କେଶରୀ-ଭୂପତି—କେଶରୀ ବଂଶୀୟ ରାଜା । ( ସେମାନଙ୍କର ) କୀରତିର ଜାଳ ଅର୍ଥାତ୍ ସମୂହ ( ର ) ମୟୂଖ—କିରଣ; ଧବଳ—ଆଲୋକିତ ।

୪ । ଅନଙ୍ଗଭୀମ—ପୁରୀ ଜଗନ୍ନାଥ ମନ୍ଦିର ନିର୍ମାତା ଉତ୍କଳ ସମ୍ରାଟ; ଅବନୀ-ନାୟକ—ପୃଥିବୀର ଅଧିପତି, ସମ୍ରାଟ; ବିଶ୍ୱବ୍ୟାପକ—ପୃଥିବୀବ୍ୟାପୀ ।

୫ । ନରସିଂହ ଭୂପ—ଲାଙ୍ଗୁଳା ନରସିଂହ ଦେବ ( ଙ୍କ ) ମନ୍ଦିରବର—ଶ୍ରେଷ୍ଠ ଦେଉଳ ଅର୍ଥାତ୍ କୋଣାର୍କ ମନ୍ଦିର । କଉସ୍ତୁଭ—ବିଷ୍ଣୁଙ୍କ ହୃଦୟର ମଣି ଏଠାରେ ଶ୍ରେଷ୍ଠ ଅଳଙ୍କାର ।

୬ । କପିଳେନ୍ଦ୍ର—କଳିଙ୍ଗର ଦିଗ୍ ବିଜୟୀ ସମ୍ରାଟ କପିଳେନ୍ଦ୍ର ଦେବ; ଶିରୀ—ଐଶ୍ୱର୍ଯ୍ୟ; ଅସି—ଖଣ୍ଡା; ବଇରି—ଶତ୍ରୁ; ଉରସ—ଛାତି ।

୭ । କାଞ୍ଚୀ-କେମା—କାଞ୍ଚୀ ଦେଶର ରାଜାଙ୍କ ଝିଅ ପଦ୍ମାବତୀ ( ଙ୍କ ) ହୃଦ-କୁମୁଦ-ଇନ୍ଦୁ—ହୃଦୟ ରୂପ କଇଁ ଫୁଲର ଚନ୍ଦ୍ରମା ଅର୍ଥାତ ପ୍ରାଣ ବଲ୍ଲଭ; ସୁଯଶ-ସିନ୍ଧୁ—ଯଶରୂପ ସମୁଦ୍ର ।

ଭଞ୍ଜ-କବିରବି-ଗୋପାଳକୃଷ୍ଣ
 ପିଇଲେ ନେତ୍ରେ ଯା ହୋଇ ସନ୍ତୁଷ୍ଟ । ୮ ।

ରାଧାନାଥ-କବି-ଲେଖନୀ ମୁନ
 ଯାହା ଅଙ୍କି ହୋଇ ଅଛନ୍ତି ଧନ୍ୟ । ୯ ।

ମନୁଜ-କେଶରୀ ମଧୁସୂଦନ
 ଦେଖି ଦେଖାଇଲେ ଯାହା ସପନ । ୧୦ ।

ସାର୍ଦ୍ଧ କୋଟି ଦେଶବାସି ନୟନ—
 ଚକୋରେ ଦେବାକୁ ଚନ୍ଦ୍ରିକା-ପାନ

---

୮ । ଭଞ୍ଜ—କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ; କବିରବି—କବିସୂର୍ଯ୍ୟ ବଳଦେବ ରଥ; ଗୋପାଳ କୃଷ୍ଣ—ରସିକ ଭକ୍ତକବି ଗୋପାଳ କୃଷ୍ଣ ପଟ୍ଟନାୟକ; ଏମାନେ ଆଖିବାଟେ ତୋର ରୂପ ପାନ କରିଥିଲେ ।

୯ । ରାଧାନାଥ କବି-ଆଧୁନିକ ଯୁଗର ଶ୍ରେଷ୍ଠ କବି ରାଧାନାଥ ରାୟ; ତାଙ୍କ ଉତ୍କଳ ବର୍ଣ୍ଣନା ଅନୁପମ ( ଆଗ ତିନି ଜଣ କବିଙ୍କୁ ପ୍ରାଚୀନ କବି ସମାଜର ପ୍ରତିନିଧି ଓ ରାଧାନାଥଙ୍କୁ ଆଧୁନିକ କବି ସମାଜର ପ୍ରତିନିଧି ରୂପେ ଗ୍ରହଣ କରି ଯାଇଛି । )

୧୦ । ମନୁଜ-କେଶରୀ—ମନୁଷ୍ୟମାନଙ୍କ ମଧ୍ୟରେ ସିଂହ; ମଧୁସୂଦନ—ମଧୁସୂଦନ ଦାସ; ସି, ଆଇ, ଇ. ସ୍ୱତନ୍ତ୍ର ଉତ୍କଳର ସ୍ୱପ୍ନ ସେ ଆଗ ଦେଖିଥିଲେ । ନୟନ…ପାନ–ଚକ୍ଷୁକୁ ଆନନ୍ଦ ଦେବାକୁ, କୃଷ୍ଣ-ଚନ୍ଦ୍ର ଗଜପତି ଭୂପତି—ପାରଳାଧୀଶ୍ୱର କାପ୍ଟେନ ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ସ୍ୱତନ୍ତ୍ରତା ବିଭୂତି-ସ୍ୱତନ୍ତ୍ର ପ୍ରଦେଶ ହେବାର ସୌଭାଗ୍ୟ ।

କୃଷ୍ଣଚନ୍ଦ୍ର ଗଜପତି ଭୂପତି
ଦେଲେ ଯାକୁ ସ୍ୱାଧୀନତା-ବିଭୂତି । ୧୨ ।
ବିଚ୍ଛନ୍ଦ ଚରଣ ପଟ୍ଟନାୟକ
ଶକ୍ତ ଯା ବିଦ୍ରୋହର ଢାଲ ଢାଳକ । ୧୩ ।

୧୯୩୮



—ଶ୍ରୀ—

# ମୋ ସୁନାପୁଅ

ଦୁଃଖୀ-ସଂଖାଳି ବାପ ରାଧା-ଗୋବିନ୍ଦ !
ସରଗୁଁ ଖସିଥିଲୁ ମୋ ସୁନାଚାନ୍ଦ !
ପୂରା ସାତୋଟି ମାସ
ନୋହୁଣୁଁ ଗଲୁ ଚାଲି କରି ନିରାଶ । ୧ ।

ଗୋଲାପ ଫୁଟିଲେ ନାହିଁ ଏତେ ମାଧୁରୀ
ତୋ ମୁହେଁ ବାପଧନ ! ଥିଲା ଯା ପୂରି
ଟଙ୍କଶିଉଳୀ ଫୁଲ
ନୋହେ ତ ସୁକୁମାର ତୋ ଅଙ୍ଗତୁଲ । ୨ ।

---

ଲେଖକଙ୍କର ସାଢ଼େ ଛଅ ମାସର ପ୍ରଥମ ସନ୍ତାନ; ନାମ ରାଧାଗୋବିନ୍ଦ
ଜନ୍ମ ୧୯୪୧ ମେ ମାସ ମୃତ୍ୟୁ—ସେହି ବର୍ଷର ଅଗଷ୍ଟ ମାସ ।

୨ । ଟଙ୍କ ଶିଉଳୀ—ଶିଙ୍ଗଡ଼ାହାର, ଶେଫାଳିକା; ସୁକୁମାର—କୋମଳ;
ଅଙ୍ଗ—ଦେହ; ତୁଲ—ସମାନ ।

ଲଜ୍ଜାଦର୍ପଣ ମୁଁହେଁ କଜଳ-ଆଖି ;
ପଦ୍ମେ ଭଅଁର ଥିଲି ପରାଏ ଲଖି
ଦିଶୁଥିଲୁ ଶୋଭନ
ଅଜ ତା ବାପ ! ପରି ସାତ ସପନ । ୩ ।

ଦୁଃଖ-ଅନ୍ଧାରେ ଇନ୍ଦ୍ର-ଅଲଅ ହୋଇ
ସେ ପୁରୁଁ ପରି ଅସିଥିଲୁ ଓହ୍ଲାଇ ;
ରଙ୍କ ରତନ ମୋର !
ଅକାଳେ ଘେନିଗଲା କାଳ-ତସ୍କର । ୪ ।

ଟିକି ଗୋଡ଼ ଦୁଇଟି ରଙ୍ଗେ ହଲାଇ
ମୁଣ୍ଡ ଗଡ଼ାଇ ହସୁ ମୋ ମୁହଁ ଚାହିଁ,
ଅଉ ସେ ଶୋଭାମାନ
ମୋ ଆଖି କାହୁଁ କରିବ ଟି ଲୋକନ ? । ୫ ।

ଗୋଡ଼ରେ ଠେଲି ଦେଇ ଦୁଅତ ମୋର,
ଖଟେ ଭାଲିଚୁ କାଲି ଦାଗ ତାହାର
ବାପ ! ଜାଣ୍ଟି ତ ନାହିଁ
ତୋ ପ୍ରାଣ-ପାଖ ଧାତା ଦେଲା ନଖାଇ । ୬ ।

---

୩ । ଶୋଭନ—ସୁନ୍ଦର ।

୪ । ସେ ପୁରୁଁ—ସ୍ୱର୍ଗରୁ ; କାଳ—ଯମ ; ତସ୍କର—ଚୋର ।

୫ । ଲୋକନ କରିବ—ଦେଖିବ ।

୬ । ଧାତା—ବିଧାତା ।

ହେଲଣି କାଲଠାରୁ ଶୂନ୍ୟ ମୋ ଘର
ତୋ ଚାନ୍ଦମୁହଁ ବିନୁ ଦିଶେ ଅନ୍ଧାର
ତୋହ ବୋଉ ଅଭାଗୀ
କାନ୍ଦୁଛି ମୁଣ୍ଡ କୋଡ଼ ବାପ ! ତୋ ଲଗି । ୭ ।

କୋମଳ ଶେଯେ ତୋରେ କୋଳେ ପୂରାଇ
କ୍ଷୁଏ ଯେ ମଶାଣିରେ ତୋତେ ପୋତାଇ
କେନ୍ଥେ କାଟିବ ଦିନ ?
ଜଞ୍ଜାଳ-ପାସୋରି ମୋ ! ରଙ୍କୁଣୀ ଧନ ! । ୮ ।

"ବାପା କିଏ ରେ !" ବୋଲି "ମଞ୍ଜୁ" ମାଉସୀ
ପିଠି କାହାର ଅଉ ଦେବ ଆଉଁସି ?
କାହା ଶୋଭା ନିରେଖି
ତୃପତ କରିବ ତା ଲୋଲୁପ ଆଖି ? । ୯ ।

ଭୁଲି ଖରି ବରଷା ରଜନୀ ଦିବା ?
ଖଟିବ "ମାୟାଧର" କା ପାଇଁ ଅବା
ସେବା କରି କାହାର
ଭୁଲିବ ବାପଧନ ! ନିଦ୍ରା ଆହାର ? । ୧୦ ।

---

୭ । ମୁଣ୍ଡ କୋଡ଼—ମୁଣ୍ଡ ବାଡ଼େଇ ।

୮ । କେନ୍ଥେ—କିପରି; ଜଞ୍ଜାଳ-ପାସୋରି—ଦୁଃଖ-ପାସୋରି ।

୯ । ମଞ୍ଜୁ—ବନ୍ଧୁ ଶ୍ରୀ ଶରତ୍ କୁମାର ପଟ୍ଟନାୟକ, ଏମ, କମ, ବି, ଏଲଙ୍କ ଘରଣୀ; ତୃପତ କରିବ—ତୋଷ କରିବ; ଲୋଲୁପ—ଶୋଭିରଙ୍କ ।

୧୦ । ରଜନୀ ଦିବା—ରାତ୍ରିଦିନ; ମାୟାଧର—କବିଙ୍କ ବିଶ୍ୱସ୍ତ ଅଙ୍ଗରକ୍ଷୀ ।

ମରଣ ସଙ୍ଗେ ଯୁଝି ଅଢ଼େଇ ମାସ
କୋମଳ ଅଙ୍ଗ ନ ସହିଲା କା ତ୍ରାସ ।
ମୃତ୍ୟୁ ବରଦ ହୋଇ
ଅଗ୍ରେଗ୍ୟ ଧାମେ ବାଟ ନେଲା କଢ଼ାଇ । ୧୧ ।

ମୁଖପଦ୍ମ ତୋ ଉଠିଲା ହୋଇଲା ମ୍ଳାନ
ଓଠେ ଖେଳାଇ ହସ ଗଲୁ ଶ୍ମଶାନ
ହରିନାମ ଶୁଣିଲୁ
ଯାଦୁକ ପାଣି ପିଇ ଆଖି ମୁଦିଲୁ । ୧୨ ।

ସ୍ୱର୍ଗେ ଅଛନ୍ତି ଯେତେ ମୋ ପ୍ରିୟ ଜନ
ପାଶେ ମୁକର ତାଙ୍କ ଯାଇଛୁ ଧନ
ତାଙ୍କୁ ଦେବୁ ବାରତା
ମନେ ମୋ ଅଛି ତାଙ୍କ ସ୍ନେହ ମମତା । ୧୩ ।

ମୋ ପ୍ରିୟତମ ଯେଣୁ ଅଟୁ ରେ ତୁହି !
କାଖେ କୋଳେ ନେଇଥିବ ଅବଶ୍ୟ ସେହି
ପ୍ରତିନିଧି ମୋ ହେବେ,
ପାରିଜାତ-ହାରେ ତୋ ଗଳା ମଣ୍ଡିବେ । ୧୪ ।

ଦଣ୍ଡିରୁ କୋଟି ଗୁଣେ ଅଜ ସୁନ୍ଦର
ସୁନ୍ଦର ମେଳେ କାହିଁରେ ବାହାର
ଶୋଭାରଙ୍କ ତୋ ବାଟ ।
ତୋ ଶୋଭା ନ ଦେଖିଲା ପାଇଛୁ ଶାନ୍ତ । ୧୫ ।

---

୧୧ । ତ୍ରାସ—କଷ୍ଟ । ୧୪ । ପାରିଜାତ—ସ୍ୱର୍ଗୀୟ ଫୁଲ ।
୧୫ । ସୁନ୍ଦର ମେଳେ—ସ୍ୱର୍ଗରେ ସମସ୍ତେ ସୁନ୍ଦର, ସେମାନଙ୍କ ମେଳରେ ।

ମର ଦେହ ତୋହର ଗ୍ରାସିଲା ମାଟି
ଅମର ଦେହ ନେଲେ ଅମରେ ଲୁଟି
ମଣିପୁର ପ୍ରବାସେ
ସୁଷମା-ଲୋଭେ ରହିଲୁ ଉପାସେ । ୧୬ ।

ବୋଉ ରହିଲା ତୋର ଠୁକି କପାଳ
ଗଲୁ ତୁ ସାରି ଦେଇ ସବୁ ଜଞ୍ଜାଳ
ଲୁହେ ଉଜାଡ଼ି ମଣି
ତୋ ଗୁଣ ଝୁରୁଥିବୁଁ ବାଳୁତ ପୋଇ ।। ୧୭ ।

୧୯୪୧



---

୧୬ । ମରଦେହ—ମାଟିର ଶରୀର; ଅମର ଦେହ—ଦେବ ଶରୀର; ଅମରେ—ଅମର ଅର୍ଥାତ୍ ଦେବତାମାନେ; ସୁଷମା—ସୌନ୍ଦର୍ଯ୍ୟ; ସୁଷମାଲୋଭେ—ଶୋଭା ଦେଖିବାର ପ୍ରବଳ ଇଚ୍ଛା ଯୋଗ ।

୧୭ । କପାଳ ଠୁକି—କର୍ମକୁ ଅଶ୍ରା କରି; ଜଞ୍ଜାଳ—ଉଦ୍‌ବେଗ, ଚିନ୍ତା; ବାଳୁତ—ଶିଶୁ; ପୋଇ—ସ୍ତ୍ରୀ ।।



—୩୪—

# ପିଲାଙ୍କ ଭାରତ ଜନନୀ

ମୁକୁଟ ସମାନ ହିମାଳୟ ଯାର
ମଥାରେ ଶୋଭଇ
ପଦ୍ମ କଳି ସମ ଲଙ୍କା ଟାପୁ ଯାର
ଚରଣେ ରହଇ । ୧ ।
ତ୍ରିଂଶ କୋଟି ଯେ ତନୟ ତନୟା
ଖେଳାଏ କୋଳେ
ଗଙ୍ଗା-ବ୍ରହ୍ମପୁତ୍ର-ସିନ୍ଧୁ-ନଦୀ-ହାର
ପିନ୍ଧେ ଯେ ଗଳେ ।୨।
ବାଲମୀକି, ବ୍ୟାସ, କାଳିଦାସ
ଆଦି ଯାହାର କବି
ଜଗତଯାକରଣ୍ଟି ମନକୁ ମୋହୁଛି
ଯାହାର ଛବି । ୩ ।
ଯା କୋଳେ ଜନ୍ମିଲେ ବୁଦ୍ଧ, ମହାବୀର
ଆଉ ଗାନ୍ଧିଜୀ
ଗରବିଣୀ ସେହି ଭାରତ ଜନନୀ
ଶ୍ରୀ ପଦେ ଅଜି ।୪।
ନମୁଛୁଁ ଅବୋଧ ବାଳକ ବାଳିକା
ହୋଉ ତା ଜୟ
ଭବିଷ୍ୟତ ତାର ଉଜ୍ଜ୍ୱଳ କରନ୍ତୁ
ମହିମାମୟ । ୫ ।

୧୯୩୪



୧ । ଟାପୁ—ଦ୍ୱୀପ; ୫ । ନମୁଁଛୁଁ—ନମସ୍କାର କରୁଛୁଁ ।



# ଉତ୍କଳ ଚିନ୍ତାମଣି ଚଉତିଶା

( ରାଗ—କଳହଂସ କେଦାର )

—୧—

କଳା-କମଳା-ଲୀଳାଭୂଇଁ ଉତ୍କଳ
କିପାଁ ମଣ୍ଡିନୁ ନେବେ କେତକ ମାଳ ?
କାହିଁ ଗଲା ମା ! ତୋର ସୁବର୍ଣ୍ଣ ବାହୁ
କାନ୍ଦି ମରୁଛୁ ରୂପ ବିରୂପ ଚାହିଁ ॥

—୨—

ଖିଳ-ଭାରତମହୀ-ମଉଳି-ଭୂଷା !
ଖେଦ-ଅରତିତ ମାତ ! ହେଲୁ ବିବଶା
ଖେଳିଲା ଖଳ ବିଧି ଦାରୁଣ ଖେଳ
ଖୋଳି ନେଲା ସଂପଦ-ବିଟପୀ-ମୂଳ ॥

---

୧ । କଳା-କମଳା-ଲୀଳା-ଭୂଇଁ—କଳା ଓ କମଳା ଅର୍ଥାତ୍ ଲକ୍ଷ୍ମୀଙ୍କ କ୍ରୀଡ଼ା ଭୂଇଁ; ସୁବର୍ଣ୍ଣ ବାହୁ—ହାତର ସୁନାକାଚ; ବିରୂପ—ବେଢ଼ଙ୍ଗ ।

୨ । ଖିଳ—ସମଗ୍ର; ମଉଳିଭୂଷା—ମୁଣ୍ଡର ଅଳଙ୍କାର ( ଅର୍ଥାତ୍ ଭାରତର ସର୍ବଶ୍ରେଷ୍ଠ ଅଂଶ ); ଖେଦ—ଦୁଃଖ, ଶୋକ; ବିବଶା—ଅଭିଭୂତା; ଅକୂଳା; ବିଟପୀ—ବୃକ୍ଷ ।

—୩—

ଗଢିଲ୍ ଯାହା କେତେ ଶତାବ୍ଦୀ ଭରି
ଗରସୁ ବିଧି ଇଚ୍ଛା ହେଲା ତା ଅରି;
ଗତ-ଗଉରବା ମୋ ଦୁଃଖିନୀ ମାତା !
ଗଳାଇ ଲୁହ କେତେ କାନ୍ଦିବୁ ଧାତା ?

—୪—

ଘନ-ଆସାର ସର ଝଁରାଇ ଲୁହ
ଘର ତେଜନ୍ତି ମାଅ ! କେତେ ତୋ ପୁଅ !!
ଘଉଡ଼ି ଯାଏ ପେଟ ଦୂର ଦେଶକୁ
ଘରଣୀ ଏ ବାନ୍ଧନ୍ତି ପଥରେ ବୁକୁ ।

—୫—

ଓଉଷ୍ମ ନାମେ ଅଉ ନାହିଁ ସମ୍ମାନ
ଉଷ୍ଣ, ବିକ୍ରମ ତାର ନାହିଁ ସ୍ମରଣ,
ଉଷ୍ଣ ଶୋଣିତେ ଶୀତ ଉଡ଼ି ଅଙ୍ଗର
"ଉଡ଼େ" * ବୋଲନ୍ତି ବଙ୍ଗେ କୁମରେ ତୋର ।

---

୩ । ବିଧି—ବିଧାତା; ଗତ-ଗଉରବା—ଯାହାର ଯଶ ଓ କୀର୍ତ୍ତିର ନାଶ ଘଟିଛି; ଗଳାଇ—ଗଡ଼ାଇ ।

୪ । ଘନ-ଆସାର—ବରଷାର ଅସର; ଝଁରାଇ ଲୁହ ( ମା ମାଇପ ଓ ପିଲାଙ୍କ ଆଖିରୁ ), ପେଟ—ପେଟର ଦାଉ; ଦୂରଦେଶ—ବର୍ମା ଓ ଆସାମ ଅଞ୍ଚଳ; ବାନ୍ଧନ୍ତି ପଥରେ ବୁକୁ—ବୁକୁକୁ ପଥରରେ ବାନ୍ଧନ୍ତି ଅର୍ଥାତ୍ ଛାତିକୁ ପଥର କରି କପାଳ ଠୁକି ରହନ୍ତି ।

୫ । ଉଷ୍ଣ—ଗରମ; ଶୋଣିତ—ରକ୍ତ; ଶୀତ—ଶୀତଳ ଉଡ଼େ—ହେନ କାଲେ ହାୟ ଯମଦୂତ ପ୍ରାୟ, କୋଥାହତେ ଏଲ ମାଲି । କୋଁଚା ବାନ୍ଧା ଉଡ଼େ ସପ୍ତମ ସ୍ୱରେ ପାଡ଼ିତେ ଲାଗିଲ ଗାଲି । ରବୀନ୍ଦ୍ରନାଥ ଠାକୁର—'ଦୁଇ ବିଘା ଜମି' ।

—୬—

ଶରକାଳୁଁ କମଳା-ଲୀଳା-ନିକେତ
ଶଗ୍ଳ ଉଡ଼ାଇଣ ତୋର ବୋଇତ
ଶବ ସାଗର ଉର ଅସନ୍ତ ବାହୁ
ଶର ଦୁର୍ଭିକ୍ଷ ଦାଉ ଥିଲା ମା କାହୁଁ ?

—୭—

ଛବଳ ଉର ତୋର ତଟିନୀ-ହାରେ
ଛନ୍ଦଥିଲା ବିଧାତା ପଡ଼ି ଭ୍ରମରେ;
ଛଦ୍ମେ ଉରଗ-ଜାଳ ତଟିନୀ ହୋଇ
ଛକିଥିଲେ ଗରଳ ଗାଳିବା ପାଇଁ ।

—୮—

ଜଳ-ଗରଳ-ପୂରେ ପ୍ଳାବି ତୋ ଦେହ
ଜାଳିଲେ ଯବେ ଯବେ ତୋ ସୁଖ ଗେହ
ଜରତୀ ଅକାଳରେ ହେଲୁ ଜନନୀ !
ଜଡ଼ତା ଗଲା ଘୋଟି ତୋ ଅଙ୍ଗେ ପୁଣି ।

---

୬ । କମଳା-ଲୀଳା-ନିକେତ—କମଳା ଅର୍ଥାତ୍ ଲକ୍ଷ୍ମୀଙ୍କ କ୍ରୀଡ଼ା ଘର; ଶଗ୍ଳ—ପତାକା; ବୋଇତ—ଜାହାଜ; ସାଗରଉର—ସମୁଦ୍ରବକ୍ଷ ।

୭ । ଛବଳ—ମନୋହର; ଛବଳ……ଭ୍ରମରେ—ବିଧାତା ଭୁଲରେ ତୋ ଗଳରେ ନଈ ରୂପ ହାରମାନ ପିନ୍ଧାଇ ଦେଇଥିଲେ; ଛଦ୍ମେ—କପଟରେ, ଉରଗ ଜାଳ—ସାପ ସମୂହ; ଛକିଥିଲେ—ସୁବିଧା ଉଣ୍ଡୁଥିଲେ ।

୮ । ପୂରେ—ସ୍ରୋତରେ; ଯବେ ଯବେ—ଅଳ୍ପ ଅଳ୍ପ କରି; ଗେହ—ଘର; ଜରତୀ—ବୁଢ଼ୀ; ଜଡ଼ତା—ନିଶ୍ଚେଷ୍ଟତା ।

—୯—

ହୁଂସାଇ ପୂଟରେ ପଶି ଦୁର୍ଭିକ୍ଷ-ଦୁଃଶା
ହୁଗଡ଼ େତା ତନୟା ମଳିନ ବେଶା
ହିଙ୍କିଲ ବିଶ୍ୱ-କୁରୁସଭା ତଳକୁ
ହିଙ୍ଗାସିଣ ବସନ ଉତାରିବାକୁ ।

—୧୦—

ନୀରବ ନିରୁପାୟ ନେତ୍ରଙ୍କ ଧାର
ନିଗାଡ଼ି ନରେର୍ଘିଲ ଲଙ୍ଘିନା ଦୋର
ନୀଳ-ଶଇଳ-ନାଥ ହେଲେ ଦାରୁଣ
ନିରଙ୍କୁଶ ନିଷ୍ଠୁର କଳି ପୀଡ଼ନ ।

—୧୧—

ଠାଣି ପରଶୁଘାତେ ପୂଣି ନିଷ୍ଠୁର
ଠିକି ଠିକି େତା ବପୁ ଦେଲା କରତ
ଠେକ ଦୁଃଖ େତାହର ହେବ ନୟନେ
ଠାଣ୍ଡି ଠାପରି କଲେ ପଡ଼ୋଶୀ ଜନେ ।

---

୯ । ହୁଁସାଇ — ବଳତ୍କାର କରି; ଦୁର୍ଭିକ୍ଷ—ଦୁଃଶା — ଦୁର୍ଭିକ୍ଷ ରୂପ ଦୁଃଶାସନ; ହୁଁଗଡ — ଧମକା ଧମକି କରି; ବିଶ୍ୱକୁରୁସଭା — ସଂସାର ରୂପ କୁରୁସଭା; ଦୁଃଶାସନ ଦ୍ରୌପଦୀଙ୍କୁ ବିବସନ କରିବା କଥା ଏଠାରେ ଲକ୍ଷିତ ହୋଇଛି । ହିଙ୍ଗାସିଣ — ଗାଳି ଦେଇ ।

୧୦ । ନୀଳଶଇଳନାଥ   ଜଗନ୍ନାଥ; ନିରଙ୍କୁଶ — ଅଶାସନ ।

୧୧ । ବପୁ — ଦେହ; ଠେକ — ଗୁରୁତର; ହେବ — ଦେଖି ।

—୧୨—

ଠାବ ହେଲା ତୋ ତାଙ୍କ ଚରଣ ତଳେ
ଠକ ନେଲେ ତୋ ଧନ କ କଉଶଳେ
ଠୂଳ ବରଷ-ଶହ ଗଲାଟି ବନ୍ଧୁ
ଠିକେ ପର ଚରଣ ମଥାରେ ନିନ୍ଧୁ ।

—୧୩—

ଡାକ କହୁଛୁ ମାତ ! ଉଠ ଏଥର
ଡ଼ଙ୍ଗର ଭାଗ୍ୟଦର୍ପ କରିବା ଚୂର
ଡକା କଲଣି ବହୁ ଖଳ ନିୟତ
ଡର ଢାଳିବା କେତେ କଳଙ୍କ-ବତ ?

—୧୪—

ଢୋକିବା ପାଇଁ ନାହିଁ ତୋର୍ ଣି ଅନ୍ନ
ଢ଼ାଙ୍କିବା ପାଇଁ ଅଙ୍ଗେ ନାହିଁ ବସନ
ଢ଼ମେଣ କର ପର ମହିମା ଗାନ
ଢାଳେ ଅତ୍ମସମ୍ମାନ ଅନତ ଫଣ ।

---

୧୨ । ଠାବ—ସ୍ଥାନ; ଠୂଳ—ପୃଷ୍ଠ; ନିନ୍ଧୁ—ରଖି ।

୧୩ । ଡ଼ଙ୍ଗର—ଦୁବୃତ୍ତ; ଚୂର—ଚୂନା; ଡକା—ଅତ୍ୟାଗ୍ରର; ନିୟତ—ଭାଗ୍ୟ ।

୧୪ । ଢମେଣ—ଫୁଲ୍ଲ ପଣିଆ କର; ଢାଳେ···ଫଣ—ଆତ୍ମସମାନ, ସବୁବେଳେ ପରଗୁଣ ଗାଇ ଗାଇବାରୁ ନଷ୍ଟ ହେଉଛି ।

—୧୫—

ନ ପୂର୍ଣ୍ଣ ଏହୁ ଦଶା ହୁଅଇ ଚିର
ନଶ୍ୱର ଶିରେ ନୃତ୍ୟ ରଚ ମା ! ଘୋର
ନଶ୍ୱରୀ ନଶ୍ୱରର ହୁଅ ଜନନ !
ନ ଦେଖିଲୁ ଯା କେବେ ଖିଲ ଅବନ୍ତ !

—୧୬—

ତପସ୍ୟା ଅଛୁ ଅମ୍ଭ ବହୁ ଯୁଗରୁ
ତଅପୋଇ ଦେଶ କ ଧନର ମରୁ ?
ତରୁଣ ସପନର ଅମରାବତ !
ତୋୟଦା ଫଳଦା ମା ! ବୀରଧରଣି !

—୧୭—

ଥେଣ୍ଟ କାଳ ଯେ ଧନ ହରନ୍ତୁ ତୋର
ଥୋଇଛୁ ତ ଅତୀତ କୋଠ ଭଣ୍ଡାର
ଥଯ୍ଯ କରିବା ତାର କୁଞ୍ଚିକା ଭୁଲ
ଥିରେ ଛୁଣ୍ଡାଇ ନେଇ ଉମିର କାଳ !

---

୧୫ । ନଶ୍ୱର—କାଳେ; ଚିର—ସ୍ଥାୟୀ; ନଶ୍ୱରୀ—ପରିଗୃଳକ; ଖିଲ —ସମଗ୍ର ।

୧୬ । ତଅପୋଇ—ଖୁଦୁରୁକୁଣୀ କଥାର ସାଧବ ଝିଅ; ତରୁଣ ସ୍ୱପନର ଅମରାବତୀ—ଯୁବଶକ୍ତ ଯାହାକୁ ସ୍ୱର୍ଗ ବୋଲି କଳନା କରେ; ତୋୟଦା—ଜଳଦାନକାରଣୀ; ଫଳଦା—ଫଳଦାନକାରଣୀ ( ସୁଜଳା ସୁଫଳା ); ବୀରଧରଣୀ—ବୀର ଭୂମି ।

୧୭ । ଥେଣ୍ଟ—ଦୁର୍ବୃତ୍ତ; ଥଯ୍ଯ କରିବା—କେଉଁଠି ଅଛି ଖୋଜି ବାହାର କରିବା; କୁଞ୍ଚିକା—ଚାବି ।

—୧୮—

ଦଳିବ ସ୍ୱାଧୀନତା ହାସ ମୋହନ
ଦୀନତା-ଦୋଷ-ହୀନ ଯେ ଅପଘନ
ଦବଅଗ୍ନିରେ ଅଗଣିତ ବୋଇତ
ଦୂର ବେଳା ଅଗତି ସାଧବବ୍ରାତ ।

—୧୯—

ଧର୍ମଣ୍ଡନା ଧନ କୁବେର-ବାଛୀ
ଧରି କମଳକରେ ସୁବର୍ଣ୍ଣ ଥାଳି
ଧୀରେ ଅଗତା ପରି ନେବେ ବନ୍ଦାଇ,
ଧବ, ସୁତ, ମାତୁଳ, ଜନକ ଭାଇ ।

—୨୦—

ନରେଶ ଖାରବେଳ ବାହିନୀ କାହିଁ
ନିଶେ କଳିଙ୍ଗ ଦର୍ପ କର ପକାଇ
'ନାଶ ମଗଧ କହି' କରଇ ନୃତ୍ୟ
ନୃମୁଣ୍ଡମାଳୀ କାଳୀ ମାତାଙ୍କ ବତ ।

---

୧୮ । ଅପଘନ—ଶରୀର; ବ୍ରାତ—ସମୂହ ।

୧୯ । ଧନକୁବେର—ସାଧବ ।

୨୦ । କଳିଙ୍ଗ ଦର୍ପ—କଳିଙ୍ଗର ଗର୍ବର ବସ୍ତୁ; ନୃମୁଣ୍ଡମାଳୀ—ନରମୁଣ୍ଡ-ମାଳିନୀ ।

—୨୧—

ପତତ୍ରି-ଜଳକ୍ଷତେ ମଧୁରତର
ପ୍ରାଚୀ ପୁଳିନେ ଉଠେ ବେଦଝଙ୍କାର
ପୁଳିନ-ବିହାରିଣୀ ତାପସବାଳା ;
ପୁଣ୍ୟ ଝଟକେ ଝଳ ଦଶକ୍ତ୍ର ତୋଷ ।

—୨୨—

ଫଳାଇବାକୁ ପ୍ରତିଫଳ-ବ୍ରତତୀ
ଫଉଜେ ଗଜପତି ମନ୍ତ୍ରୀ ଙ୍କରତ
ଫୁତ୍କାର କାଞ୍ଚୀଅଭିଯାନେ ଗମନ
ଫଣ ଅହତ ଫଣୀ ଧାଏଁ ଯେସନ ।

—୨୩—

ବାରଣ ଶିଳ୍ପୀ ଚନ୍ଦ୍ରଭାଗା-ସୈକତେ
ବଳ ହୋଇ ଧୂଅନ୍ତେ ଖଣ୍ଡ ରକତେ
ବଞ୍ଚାଏ ବଷ୍ଣୁ ନାଶି ତନୁଜ ତନୁ
ବାରଣ ଭାଇ ବଡ଼ ତୁଚ୍ଛଟି ସୁନୁ ।

---

୨୧ । ପତତ୍ରୀ—ପକ୍ଷୀ; ଜଳକ୍ଷତ—ଜାକଳି; ପ୍ରାଚୀ—ପୁରୀ ଜିଲ୍ଲାର ନଦୀ, ଏ ନଦୀ କୂଳରେ ବହୁତ ଋଷି ଆଶ୍ରମ ଥିଲା; ପୁଳିନ—କୂଳ; ତାପସ—ଋଷି ।

୨୨ । ପ୍ରତିଫଳ ବ୍ରତତୀ—ପ୍ରତିଫଳ ରୂପକ ଲତା; ଫଳାଇବାକୁ…… ବ୍ରତତୀ—ଅପମାନର ପ୍ରତିଫଳ ଦେବା ପାଇଁ; ଗଜପତି—ପୁରୁଷୋତ୍ତମ ଦେବ; ଫୁତ୍କାର—ପ୍ରକାଶ୍ୟରେ କ୍ରୋଧ ପ୍ରକଟିତ କରି; ଫଣଅହତ—ଫଣୀ-ଯେଉଁ ସାପର ଫଣାରେ ପାହାର ବାଜିଛି ।

୨୩ । ସୈକତେ—ବାଲିରେ; ତନୁଜ—ପୁଅ; ବାରଣ ଭାଇ ବଡ଼…… ସୁନୁ—ବାରଣ ଭାଇରେ ଦାୟୁ ନା ପୁଅ ମୁଣ୍ଡରେ ଦାୟୁ ପ୍ରବଚନ; ତୁଚ୍ଛ—ହେୟ; ସୁନୁ—ପୁଅ; ବାହୁ—ଧାଡି ( Flank )

—୨୪—

ଭୀମ କାନ୍ତ ନେତ୍ର ଯା ଦେଖିଲ୍ଲ ଅଜ
ଭାଗ୍ୟସଉଧ ତୋର ଥିଲେ ସରଜ
ଭାଙ୍ଗି ପଡ଼ବ ତାହା ବାହୁକ ବାନ୍ଧ
ଭାଲେ ବରଷି-କର ଥିଲ ଟି ଲାନ୍ଧ

—୨୫—

ମାଆ ଯେ ଶୋଣିତରେ ମୋ ପିତୃଜନେ
ମହୀଚଣ୍ଡୀ ପିପାସା ତୋଷିଲେ ରଣେ
ମୋ ଶିରତନୁରେ ତା ତପ୍ତି ଛୁଟାଇ
ମହା ପ୍ରବଳ ବେଗେ ଅଜ ଧାମଇ ॥

—୨୬—

ଜନମଦାୟୀ ଧାୟୀ ଜନମଭୂଇଁ
ଜଡ଼ତାପହାରିଣୀ ପଦ ତୋ ଛୁଇଁ
ଜଗତେ ସାକ୍ଷୀ ରଖି କଲି ଶପଥ
ଜୀବତ ସେବାରେ ତୋ ଯିବ ନିୟୂତ

---

୨୫ । ଶୋଣିତ—ରକ୍ତ; ପିତୃଜନେ—ପୂର୍ବ ପୁରୁଷମାନେ; ମହୀଚଣ୍ଡୀ—ପୃଥିବୀ ରୂପିଣୀ ଚଣ୍ଡୀ ଦେବୀ; ପିପାସା—ଶୋଷ; ଶିର ତନୁରେ—ସ୍ଥୂଳ ସୂକ୍ଷ୍ମ ଶିରରେ, ଶିର ପ୍ରଶିରରେ; ତପ୍ତି—ଉଷ୍ମ, ଧାମଇ—ଧାଉଁଛି ।

୨୬ । ଜନମଦାୟୀ—ଜନ୍ମଭୂମି; ଧାୟୀ—ପାଳନ କର୍ତ୍ତ୍ରୀ; ଜୀବତ—ଜୀବନ ।

—୨୭—

ରଞ୍ଜନ୍ତା ରଞ୍ଜିତ ମୋ ତୋ କଳେବର
ରଚିବ ତହିଁ ଏବେ ଶବ୍ଦପୂର
ରସାରୁ ରସାଭୂଷା ! ଦେବ ଲୁଚାଇ
ଘାଢ଼ର କଳଙ୍କ ଯେ ତୋ ମୁଖ ଛାଇ ।

—୨୮—

ଲେଖକ-ତଟିନୀ ମୁଁ ନେବୁଁ ବୁହାଇ
ଲୀଳାରେ ଦୁଃଖୀ ଛିଣ୍ଡାର ଦେବି ଉଡ଼ାଇ
ଲଳିତ-କଳା-ଦୋଳା ଝୋଲୁଁ ମା ! ତୋର
ଲଭେ କମଳା ଅଭ ନୋହିବେ ଦୂର ॥

—୨୯—

ବରିଷ୍ଠ-କଳ୍ପନାର ମରୁତ ପୁଣି
ବୁଲିବ ବିହାୟସେ ବୀର-ମେଦିନ !
ବରିଷ୍ଠ ସ୍ୱପ୍ନ ପୁଣି ବର୍ଣ୍ଣେ, ପଥରେ,
ବରଣିବେ ତୋ ସୁତେ କୁଶଳ କରେ ।

---

୨୭ । ପୂର — ସ୍ରୋତ; ରସା — ପୃଥିବୀ; ରସାଭୂଷା — ପୃଥିବୀର ଅଳଙ୍କାର; ଛାଇ — ଘୋଡ଼ାଇ ।

୨୮ । ତଟିନୀ — ନଦୀ; ଲୀଳାରେ — ହେଳାରେ, ବିନା ଅଭ୍ୟାସରେ; ଲଳିତ — ସୁକୁମାର ।

୨୯ । ମରୁତ — ପବନ; ବିହାୟସେ — ଆକାଶରେ; ବରିଷ୍ଠ ସ୍ୱପ୍ନ ପୁଣି ବର୍ଣ୍ଣେ ପଥରେ — ଅକ୍ଷରରେ ଓ ପଥର ଦେହରେ ସ୍ୱପ୍ନ ଅର୍ଥାତ୍ କଳ୍ପନାକୁ ରୂପ ଦେବେ ଅର୍ଥାତ୍ କାବ୍ୟ ଓ ସ୍ଥାପତ୍ୟ ରଚନା କରିବେ; କୁଶଳ — ଦକ୍ଷ ।

—୩୦—

ଶ୍ୟାମଳ ହାସ ହସିବେ ତୋ କେଦାରେ
ଶ୍ୟାମଳ ବାସ ମରୁ ପିନ୍ଧିବେ ଗିରେ
ଶ୍ୟାମାସ୍ତ୍ରମାନ ତୋର ହେବ ମାଧୁରୀ
ଶୀର୍ଣ୍ଣ ହେବ ମୋ ଶୋଭଡଙ୍କିଣୀ ର ।

—୩୧—

ଷୋଡ଼ଶ ଉପଚାରେ କାମନା ପଦ
ଷଣ୍ଢାଙ୍ଗେ ପୂଜା ପାଇଁ ଥିବ ସମ୍ପଦ
ଷୋଡ଼ଶୀ ସୁତା ତୋର ଜଣେହେଁ କେହୁ
ଶୀର ନ ଥିବେ ହାର ବୁଭୁକ୍ଷା ସହୁ ।

—୩୨—

ସିକତତଳ ତୋ ବେଳା ତଟେ ପଥଘାଟେ
ସାଧବ କୋଳାହଳେ ସୈନ୍ୟକୁହାଟେ
ସପନ ସତ ହେବ ହେବେ ମୁଖର,
ସୁଜଳା ସୁଫଳା ମା ! ସୁଦନ ତୋର

---

୩୦ । କେଦାର—କ୍ଷେତ୍ର; ମରୁ—ମରୁଭୂଇଁ; ବାସ—ବସନ, ଲୁଗା; ହେର—ଦେଖି ।

୩୧ । ଷୋଡ଼ଶୀ···ସହୁ—ଅର୍ଥାତ୍ ଏ ଦେଶରେ ଆଉ ଦୁର୍ଭିକ୍ଷର ଦାଉରେ ଯୁବତୀମାନଙ୍କ ରୂପଶ୍ରୀ ନଷ୍ଟ ହେବ ନାହିଁ, ଷୋଡ଼ଶ·····ସମ୍ପଦ—ଯୌବନର ସୁଖ ଉପଭୋଗ ପାଇଁ ସେମାନଙ୍କ ଶରୀର ଉପଯୁକ୍ତ ପୁଷ୍ଟି ମଣ୍ଡିତ ହୋଇଥିବ ।

୩୨ । ସିକତତଳ—ବାଲି ପୂର୍ଣ୍ଣ; ବେଳା—ସମୁଦ୍ରକୂଳ; ସାଧବ—ବଣିକ ।

—୩୩—

ହବ, ପୟ, ତଣ୍ଡୁଳ, ସ୍ୱର୍ଣ୍ଣଚଷକ
ହେଲାଟରେ ଆଚରଣ ସହଲ୍ଲୀଷକ
ହରପ୍ରିୟା ଗହଣେ ଅସୁଛୁ ପେର
ହରଷେ ଭାଗ୍ୟବଧୂ ନେବୁ ମା ! ଦର ।

—୩୪—

କ୍ଷଉଣୀ-ମଥାମଣି ଜନନୀ ମୋର
କ୍ଷେମଦେ ! ବହୁଦେ ତୋ ଦଅ ଏ ବର
କ୍ଷିତରେ ସନମାନ ବଲ୍ଲେକ ତୋର
କ୍ଷରୁଥିବ ନୟନୁଁ ଅନନ୍ଦେ ନୀର ।

୧୯୩୦



୩୩ । ହବ—ଘିଅ, ପୟ—କ୍ଷୀର; ତଣ୍ଡୁଳ—ଚାଉଳ; ଚଷକ—ପାତ୍ର; ସହଲ୍ଲୀଷକ—ସ୍ତ୍ରୀ ପୁରୁଷଙ୍କର ମଣ୍ଡଳାକାର ନାଚ, ହରପ୍ରିୟା—ଲକ୍ଷ୍ମୀ ଭାଗ୍ୟବଧୂ—ଭାଗ୍ୟ ରୂପ ବଧୂ, ସୌଭାଗ୍ୟ ।

୩୪ । କ୍ଷଉଣୀ—ପୃଥିବୀ; କ୍ଷେମ—ମଙ୍ଗଳ; କ୍ଷିତ—ପୃଥିବୀ; ବଲ୍ଲେକ—ଦେଖି; କ୍ଷରୁଥିବ—ଝରୁଥିବ, ନୀର—ପାଣି, ଲୁହ ।



—୩୨—

# ପ୍ରଭାତେ

( ରାଗ—ଶଙ୍କରାଭରଣ )

କାହିଁ ଅଛି ପ୍ରାଣପ୍ରିୟା କାହିଁ ଅଛି ମୁହିଁ !!
ପ୍ରଭାତ ପବନ ! ଶୁଣ ଡ଼ାକ କହୁଛିଇଁ
ମନ୍ଦେ ବହିବୁ ସେ ଦେଶେ
ଫୁଲାଇ ଗଣ୍ଡ ତାର କୋମଳ ପରଶେ । ୧ ।

ଅଯତ୍ନ ସୁନ୍ଦର ତାର ଅଳକଆବଳି
ମନ୍ଦେ ନାଚିବାର ବେଳେ ଦୋହଲି ଦୋହଲି
ମୋର ପ୍ରତିନିଧି ହେବ
ନୟନ ପୂରାଇ ସେହୁ ଶୋଭା ନିରେଖିବ । ୨ ।

ଝରଣି ଈର୍ଷଇ ତୁମ୍ଭ ପକ୍ଷେ ରେ ବିହଙ୍ଗେ !
ଦେଖୁଁ ଦେଖେ ହେଲେ ପରା ଉଡ଼ିଯାଅ ରଙ୍ଗେ,
କାଲି ଯିବ କରେ ଚଳି
କର୍ଣ୍ଣେ ଶୁଣାଇବ ତାର ପ୍ରଭାତୀ କାକଳି ? । ୩ ।

---

୧ । ମନ୍ଦେ—ଧୀରେ ଧୀରେ; ଗଣ୍ଡ—ଗାଲ ।

୨ । ଅଯତ୍ନ ସୁନ୍ଦର—କୌଣସି ପ୍ରକାର ଯତ୍ନ କରା ନ ହୋଇ ସୁଦ୍ଧା ମନୋହର, ଅଳକ—ଚୂନ ଚୂନିଆ ବାଳ, ଆବଳି—ସମୂହ ।

୩ । ଈର୍ଷଇ—ତୁମ୍ଭମାନଙ୍କ ଡେଣା ଦେଖି ସେମାନଙ୍କର ଈର୍ଷା ହୁଏ; ରଙ୍ଗେ—କୌତୁକରେ; ପ୍ରଭାତୀ—ସକାଳର, କାକଳି—(ପକ୍ଷୀମାନଙ୍କ) ରବ ।

ଯାମିନୀର ଶେଷ ଯାମେ ମୋତେ ସେ ସପନେ
ଦେଖି ଅହା ଅଶ୍ରୁ ଭରିଥିବ ନେତ୍ରକୋଣେ !!
ତାହା ଶୁଖାଇବ ପବନ
କାକଳରେ ହେବ ତାର ସୁସୁପ୍ତି ଭଗନ । ୪ ।

ନାସାରୁ ପ୍ରସରିବ ତା ମଳୟ ସୁବାସ
ଗନ୍ଧବହ ! ଆଣିବ ତା ବନ୍ଧୁ ମୋହ ପାଶ
ତାହା କୁନ୍ତଳ-ନୀଳିମା
ପକ୍ଷେ ବହି ଆଣିବ ଗୋ ବିହଙ୍ଗିନୀ ଶ୍ୟାମା ! । ୫ ।

ଭୁଲିତାର ଗାଢ଼ ମସୀ, ଲକ୍ଷା ଚରଣର
ତରଳ-କନକ-କାନ୍ତି, ଭାତି ନୟନର
ଆଣିବ ବିହଙ୍ଗବାର !
ଅସରନ୍ତି ଶୋଭାବତୀ ଗଳାମାଳା ମୋର । ୬ ।

ତା ଶୋଭା-ବାର-ଅଶାୟୀ ମୋ ଜୀବ-ସ୍ମାରକ
ହେଲା କଲେ ହେବ ସବେ ମୋ ଜୀବଘାତକ
ବନ୍ଧୁଗଣେ ମୋରେ କିଣ
କୃତଜ୍ଞତା-କ୍ଷେତକେ ମୁଁ ଶୁଝିବଇଁ ଋଣ । ୭ ।

୧୯୩୬



୪ । ଯାମିନୀ – ରାତ୍ରି, ଯାମ – ପ୍ରହର, ସୁସୁପ୍ତି – ନିଦ ।

୫ । ନାସାରୁ······ସୁବାସ – ତା ନିଃଶ୍ୱାସ ପବନ ବସନ୍ତ ପବନ ପରି ସୁବାସିତ; ପ୍ରସରିବ – ବହିବ, ଗନ୍ଧବହ – ପବନ, କୁନ୍ତଳ – କେଶ, ନୀଳିମା – ଘନ କୃଷ୍ଣବର୍ଣ୍ଣ, ବିହଙ୍ଗିନୀ – ପକ୍ଷିଣୀ, ଶ୍ୟାମା – କୃଷ୍ଣବର୍ଣ୍ଣ ।

୬ । ଗାଢ଼ମସୀ – ନିପଟ କଳାବର୍ଣ୍ଣ; ଲକ୍ଷା – ଅଳତା, କନକକାନ୍ତି – ସୁନାବର୍ଣ୍ଣ; ଭାତି – ତେଜ, ବିହଙ୍ଗମ – ପକ୍ଷୀ; ବାର – ସମୂହ ।



—୩୨—

# ପଠାଣି ସାଆନ୍ତ

( ରାଗ କଳହଂସ କେଦାର )

ପଠାଣି ସାଆନ୍ତ ହେ ! ଗଲେ ବରଷ
ଗଲାଣି ବହୁ ଆଜ ଉତ୍କଳ ଦେଶ
ତୁମ୍ଭ ସମାନ ଜଣେ ପାଇ ପୁଅକୁ
ଗରବେ ଫୁଲାଇଲା ନାହିଁ ତ ବୁକୁ । ୧ ।

ଗୌରବ-ଗିରି-ଚୂଡ଼ା ସର ଉଦୟ
ହୋଇ ଆଲୋକ ଦେଶ ଉଜଳ ଲୟ;
ଶ୍ମଶାନେ ଜନମିଲ ତୁଳସୀ ସର
ପ୍ରଚାରି ସଉରଭେ ଧରଣୀ ଭର । ୨ ।

ଯାବତ ଗୌରବର ସୂତିକାଗାର
ହୋଇ ଶ୍ମଶାନ ପୁଣି ହେବାକୁ ତାର
ଉତ୍କଳ ଭାଲ ପାଇଁ ପବି ବରଷି
ଦାରୁଣ ଭାଗ୍ୟଲିପି ଅଛଇ ରଚି ! । ୩ ।

---

ପଠାଣି ସାଆନ୍ତ—ସାମନ୍ତ ଚନ୍ଦ୍ରଶେଖରଙ୍କ ଡାକ ନାଆଁ ।

୨ । ଗିରି ଚୂଡ଼ା—ପର୍ବତ ଶିଖର; ଉଜଳ ଲୟ—ଅନ୍ତର୍ଦ୍ଧାନ ହେଲ; ସଉରଭ—ସୌରଭ—ସୁଗନ୍ଧ ।

୩ । ସୂତିକାଗାର—ଏନ୍ତୁଡ଼ିଶାଳ, ଜନ୍ମସ୍ଥାନ; ଭାଲ—କପାଳ—ଲଲାଟ; ବିରଞ୍ଚି—ବିଧାତା; ଦାରୁଣ—ନିର୍ଦ୍ଦୟ; ଭାଗ୍ୟଲିପି—ଲଲାଟ ଲେଖନ ।

ମାଣିକ୍ୟ ଯାଏ ଯଦି ଚଣ୍ଡାଳ ସାହି
ପିନ୍ଧନ୍ତି ତାକୁ ଗୋରୁହାଡ଼େ କଣାଇ;
ତଥା ପ୍ରତିଭା ତୁମ୍ଭ ଭଳି ଏ ଦେଶେ
ପଡ଼ିଲା ଗୁରୁ-ଅବହେଳା-ଗର୍ଭେ । ୪ ।

ପ୍ରତିଭା-ରବି ପ୍ରତି ହୋଇ ବଉଦ
ଅଭାବ ନ ସାଧିଲା ଅହୋ କି ବାଦ !
ବାଧା ନୋହିଲେ କେତେ ଜ୍ଞାତି ସ୍ୱଜନ
ତଥାପି ଗୁଣ ରହିଲା କି ଗୋପନ ? । ୫ ।

ଧୂମ ପଟଳ ତଳେ ଅନଳ ଶିଖା
ଲୁଚିବା ଚିରକାଳ ଅଛି କି ଦେଖା ?
ବଉଦ ଆବରଣେ ଭାସ୍କର-କର
ଲୁଚି ହେଲଣି କେବେ ଅନ୍ଧାର ଚିର ? । ୬ ।

ମରୀଚିମାଳୀ ସମ ତୁମ୍ଭ ପ୍ରତିଭା
ଚିରି ତମ ପଟଳ ସର୍ଜିଲା ଦିବା,
"ସିଦ୍ଧାନ୍ତ ଦରପଣେ" ମୁଖ ଉଜ୍ଜ୍ୱଳ
ନିରେଖି ଗରବିଣୀ ହେଲା ଉତ୍କଳ । ୭ ।

---

୪ । ମାଣିକ୍ୟ...କଣାଇ—"ହାଡ଼ି ସାଇରେ ମାଣିକ ପଡ଼ିଲେ ଗୋରୁ ହାଡ଼ ସେନ ବାନ୍ଧନ୍ତି"—ପ୍ରବଚନ; ଗର୍ଭେ—ଗ୍ରାସେ—କବଳରେ ।

୬ । ଚିର – ଚିରସ୍ଥାୟୀ ।

୭ । ମରୀଚିମାଳୀ—ସୂର୍ଯ୍ୟ; ସର୍ଜିଲା ଦିବା—ଉତ୍କଳର ଅଖଣ୍ଡ ଅନ୍ଧକାରକୁ ଦୂର କରି ଉତ୍କଳକୁ ଖ୍ୟାତି ଆଲୋକ ପ୍ରଦାନ କଲା । ସିଦ୍ଧାନ୍ତ ଦର୍ପଣ – ସାମନ୍ତ ଚନ୍ଦ୍ରଶେଖରଙ୍କ ଅମର ଗ୍ରନ୍ଥ; "ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ । ନର ଦେହେ ଥିବ ଯାବତ ହୃଦୟ ।"
ରାଧାନାଥ ।

କୀରତ-କବି କିଣ୍ଟିଣୀ ନାମେ କେତନ
ଧରିରେ ଉଡ଼ାଇଲ ତୁମ୍ଭେ ନୂତନ,
ମନୀଷା-ଦରବାରେ ବସିବା ପାଇଁ
ଏ ଦେଶେ ଅଛି ତୁମ୍ଭ ସରସ କାହିଁ ? । ୮ ।

୧୯୩୬



—୩—

# ଅଭାଜନର ନିମନ୍ତ୍ରଣ

( ଗୋପୀଭାଷା ବୃତ୍ତରେ )

ପଦ ପକାଇ କୁଟୀରେ ମୋହର
ପଦ୍ମ ଫୁଟାଅ ତହିଁ ସୁନ୍ଦର ! । ୧ ।

ତୁମ୍ଭ ଅଙ୍ଗଲତା ହୋଇ ଦାମିନୀ
ଝଟକାଉ ମୋ ଅଙ୍ଗନ-ଅବନୀ । ୨ ।

କଣ୍ଠ ବାଜେଣୀ ବୀଣାରେ ମୂର୍ଚ୍ଛନା
ଟେକ ସମ୍ଭାଷଣ କର ରଚନା । ୩ ।

ଓଠେ ହାସ-ତାମରସ ଫୁଟାଇ
ଧନପତି ଭୂତ ଦିଅ ଲୁଟାଇ । ୪ ।

---

୮ । କୀରତ କବି କିଣ୍ଟିଣୀ—କୀର୍ତ୍ତି ଶାଳିନୀ (ଉତ୍କଳ ଭୂମି) ମନୀଷା ଦରବାରେ—ମନୀଷୀମାନଙ୍କ ସଭାରେ; ସରସ—ସମାନ ।



୨ । ଅଙ୍ଗଲତା—ଶରୀର; ଦାମିନୀ—ବିଜୁଳି; ଅଙ୍ଗନଅବନୀ—ଅଗଣାର ଭୂଇଁ ।
୩ । ସମ୍ଭାଷଣ—କଥାବାର୍ତ୍ତା;
୪ । ତାମରସ—ପଦ୍ମ; ଧନପତି ଭୂତ—କୁବେର ସଂପତ୍ତି ।

ତୁମ୍ଭ କୋସ୍ବର ହେବା ଉତ୍ସବ
ଛତ୍ରପତି ହେବାରେ ନାହିଁ ଲବ । ୫ ।

ସିଂହାସନ ବଦଳରେ ସଙ୍ଗତ
ତୁମ୍ଭ କଣଲେ ଅନେକ ଭୂପତି । ୬ ।

ଅନୁକମ୍ପା ଯେଣୁ ଅଭାଜନରେ
ତେଣୁ ସାହସ ବାନ୍ଧ ମୁଁ ମନରେ । ୭ ।

ଭବବାକୁ ମୋ କୁଟୀର ଅଲେକେ
ଭୀତ ବରଜ୍ଞ ପ୍ରୀତିବଣୀ ଡାକେ । ୮ ।

୧୯୪୪



୫ । କୋସ୍ବର—ଶୂକର; ଛତ୍ରପତି—ରାଜା ।,
୬ । ବଦଳରେ—ବଦଳରେ ।
୭ । ଅନୁକମ୍ପା—ଦୟା; ଅଭାଜନ—ଅଯୋଗ୍ୟ



—୩୯—

# କୁନ୍ତଳା କୁମାରୀ
( ୧ )

ରାଗ—ଦେଶାକ୍ଷକାମୋଦୀ

( ଶ୍ରୀରାଧା ବାତୁଲୀ ପ୍ରେମରନ୍ଧ୍ର ତୁଳ ବୃନ୍ତରେ )'

"ଉତ୍କଳ ଭାରତୀ" ! ଶାରଦ ପ୍ରକୃତି ସାଜିଛି ସମ୍ଭାର ତୁମ୍ଭ ପାଇଁ
କାଶ ଫୁଲ ହାସେ ସୂଚାଇ ଉଲ୍ଲାସ ଡାକେ, ଅବତର ଦୟାବତି
ବୀଣା ଧରି କରେ
ବରଷି କବିତା ସୁଧାଧାରେ
ପ୍ରେରଣାର ବୀଜ ବୁଣି ଚଉଦିଗେ ଜଗାଇ ଉତ୍କଳ ବସୁଧାରେ ।୧।
ଗୀର୍ବାଣ ସଂଗୀତ ତାନ ଶିଖିବଣି ବିପଞ୍ଚୀ ତୁମ୍ଭର ବାଣୀସୁତେ !
ଅମରାବତୀର ବାରତା ଦେବାକୁ ଓହ୍ଲାଇ ଆସ ଗୋ ଏ ମରତେ
"ଅଞ୍ଜଳି" ରେ ଯାହା
ପାଇଁ ଖୋଜୁଥିଲ କବେ ରାହା
ସନ୍ଧାନ ତାହାର ଦେଉଛୁ ସତରେ ହୁଅ ଦୟାବତି ! ଅମ୍ଭ ସାହା !

---

ଗୋଟିଏ ଶ୍ରାବ୍ୟ ଉତ୍ସବର ପ୍ରାରମ୍ଭ ଗୀତିକା ।

୧ । "ଉତ୍କଳ ଭାରତୀ"—କୁନ୍ତଳାକୁମାରୀଙ୍କ ଉପାଧି; ଶାରଦ—ଶରତ୍‌କାଳର; କାଶ ଫୁଲ ହାସେ···ଉଲ୍ଲାସ—ଶରତକାଳରେ କାଶ ତଣ୍ଡୀ ଫୁଲ ଫୁଟେ ସତେ ଯେବା ତାହା ଶରତ୍ ପ୍ରକୃତିର ଆନନ୍ଦ ସୂଚକ ହସ; ସୁଧାଧାର—ଅମୃତର ଧାର ।

୨ । ଗୀର୍ବାଣ—ଦେବତା; ବିପଞ୍ଚୀ—ବୀଣା, ଅମରାବତୀ—ସ୍ୱର୍ଗପୁର 'ଅଞ୍ଜଳି'—କବିଙ୍କର ବିଶ୍ୱଗୀତିକା ପୂର୍ଣ୍ଣ କବିତା ପୁସ୍ତକ; ଅଞ୍ଜଳିରେ··· ରାହା"—ଅଞ୍ଜଳି ସୃଷ୍ଟି କାଳରେ କବି ଯାହାଙ୍କ ନିକଟବର୍ତ୍ତିନୀ ହେବାର ରାହା ବା ବାଟ ଅନ୍ୱେଷଣ କରିଥିଲେ ଏବେ ତାହା ପାଇଛନ୍ତି ଏହାହିଁ ଅର୍ଥ ।

"ପ୍ରେମ ଚିନ୍ତାମଣି"-ଲୀଳାସ୍ଥଳୀ ପୁଣି ନୟନ ଗୋଚରେ ଥିବ ହୋଇ
ମର୍ତ୍ତ୍ୟ ଅପୂର୍ଣ୍ଣତା ପୂର୍ଣ୍ଣତମେ ଦେଖି ତଳାର୍ଦ୍ଧେ ତ ଆଉ ଥିବ ନାହିଁ;
ହେନ୍ଦ୍ର ପୂର୍ଣ୍ଣତମ
ନର ଆଦର୍ଶର ସୀ ଚରମ
ଉତ୍କଳୀ-ପରାଣେ ସ୍ଫୁରିତ ହୋଇବ ଯେ ଗାନେ ଗାଅ ତା
ନମୋନମ । ୩ ।

୧୯୪୧



—୪୦—

# ଉତ୍କଳା ଉଦାସୀ

( ଧୀରେ ରାଧା କର ଧର-ବୃନ୍ଦରେ )

ତ୍ରିଦିବରୁ ସତେ ଆଜି ଅବତରି ଥିଲି କି
କରେ ଧରି ପରିଚିତ ଉନ୍ମାଦନୀ ବଲ୍ଲକୀ
ଦେବୀ ଗୋ !
ଉତ୍କଳ ଭୂଇଁ କେବେ ଦେଖି ଗଲି କି
ଶେଷ ଥର ଦେଖା ଦେଇଁ ଦଶା ତାର ଭଲ କି ? । ୧ ।

---

୩ । ପ୍ରେମ ଚିନ୍ତାମଣି ଲୀଳାସ୍ଥଳୀ···ହୋଇ—ପ୍ରେମ ଚିନ୍ତାମଣି କବିଙ୍କର ରାଧାକୃଷ୍ଣ ଲୀଳାମୂଳକ ବିଖ୍ୟାତ ପୁସ୍ତକ । ଏଠାରେ ରାଧାକୃଷ୍ଣଙ୍କ ଲୀଳାସ୍ଥଳୀ କବି ଦେଖିଥିବେ ବୋଲି ତର୍କଣା କରି ଯାଉଛନ୍ତି; ପୂର୍ଣ୍ଣତମ—ପୂର୍ଣ୍ଣବ୍ରହ୍ମ ଶ୍ରୀକୃଷ୍ଣ; ଚରମ – ଶେଷ ସୀମା ।



୧ । ତ୍ରିଦିବ – ସ୍ୱର୍ଗ; ବଲ୍ଲକୀ- ବୀଣା ।

କବିତାରେ ଯେଉଁ ବୀଜ କରିଥିଲ ବପନ
ଅଙ୍କୁରିଛି କି ତା ନାହିଁ କରିଥିବ ଲୋକନ
ଦେବ ଗୋ !
ଉପ୍ରୋଧେ କିନ୍ତୁ ନ କରିଣ ଗୋପନ
କହିଯାଅ ସତ ସତେ ହେବ ତୁମ୍ଭ ସପନ ? । ୨ ।

ନଇରାଶ୍ୟ ଘୋଟିଅଛି ଦେଖୁଥିବ ନୟନେ
ବାଧାର କଣ୍ଟକ ପୁଣି ଉନ୍ନତିର ଅୟନେ
ଦେବ ଗୋ !
ଉପାନ୍ତୁ ସ୍ୱାଧୀନତା-ଫଳ-ଚୟନେ
ଦିଶୁଥିଲେ କଟନ୍ତା କି କାଳ ବୃଥା ଶୟନେ ? । ୩ ।

ପ୍ରୋଜ୍ଜ୍ୱଳ ହୋଇବ ଦୃଷ୍ଟି ଦେଇ ଯାଅ ଅଞ୍ଜନ
ସ୍ଫୁଲିଙ୍ଗ ବିଞ୍ଚାଇ ଯାଅ ହୋଇ ବୈରି ଗଞ୍ଜନ
ଦେବ ଗୋ ।
କଳଙ୍କ-ଗିରି-ଚୂଡ଼ା ଅମ୍ଭେ ଭଞ୍ଜନ
କରିଣ କରିବୁଁ ମାତୃଭୂମି ମନୋରଞ୍ଜନ । ୪ ।

୧୯୪୧



୨ । କରିଥିଲ ବପନ—ବୁଣିଥିଲ; କରିଥିବ ଲୋକନ—ଦେଖିଥିବ ।
୩ । ଅୟନ—ବାଟ
୪ । ପ୍ରୋଜ୍ଜ୍ୱଳ—ଅତି ପରିଷ୍କାର; ସ୍ଫୁଲିଙ୍ଗ—ନିଆଁଫୁଲ; ଚୂଡ଼ା—ଶିଖର; ବୈରିଗଞ୍ଜନ—ଶତ୍ରୁବିମର୍ଦ୍ଦନ ।



—୪୧—

# ଗୋପ ପାଶକୁ ମିନତି

ରାଗିଣୀ—ନରସିଂହ ଜେନ୍ଥଣା ବାଣୀ

( 'ମଥୁରା ମଙ୍ଗଳ'ର, ଗୋପିକା ବଚନ ଶୁଣି
ଉଦ୍ଧବ କହନ୍ତ ବାଣୀ—ବୃତ୍ତରେ )

ଶରଦ-ଗଙ୍ଗଶିଉଳୀ— ସୁକୁମାରୀ ମୁହିଁ ବୋଲି
କହିଅଛ ବହୁବାର ସଖା !
ବିଚ୍ଛେଦ-ତପନ-କର ହୋଇଲା ଅତି ପ୍ରଖର
ସପନେ ନ ଦିଅ ଏବେ ଦେଖା ହେ
ପ୍ରିୟତମ !
ଦିନ ରାତି ହେଉଅଛୁ ଅସର
ଯାଏ ଜଳି ଅନ୍ତର ଟି ମୋର ହେ । ୧ ।

ଘଟିଥିଲା ଦୁର୍ଘଟନ, ବଞ୍ଚାଇଥିଲ ଜୀବନ
ସରସୀର ବାହରୁ ଉଧର
ଭାବିଥିଲେ ବାପା ବୋଉ ମିଳି ଏ ଗୋପର ହେଉ
ଗୋପ ବନ୍ଧୁ ଯାଇଥାନ୍ତା ସର ହେ
ପ୍ରିୟତମ !
ସେହୁ ଦିନୁ ହେଲି ଗଳାହାର
ଷୋଳଅଣା ହେଲି ମୁଁ ତୁମ୍ଭର ହେ । ୨ ।

---

୧ । ତପନକର—ସୂର୍ଯ୍ୟ କିରଣ; ପ୍ରଖର—ତୀକ୍ଷ୍ଣ; ଅସର – ଅସରନ୍ତି ।

କହୁଥିଲ ମୁହିଁ ମନା   ବରଜି ମୋରେ ଯାଅ ନା ।
ଏଠି କଣ ପାଠ ହେବ ନାହିଁ ?
ପାଠ ଯା ହେବାର ହେଉ   ତୁମ୍ଭ ମୋହ ଯୋଗ ଥାଉ
କଥା ମୋର ତଳକୁ ପକାଇ ହେ
ପ୍ରିୟତମ !
ଦୂରେ ଯାଇଁ ରଚିଲ ନିବାସ
ମିଳନହ୍ରଦେ ଜଳାଇ ହୁତାଶ ହେ ।୩ ।

ଅହା ମୋ କପାଳ ବାମ   ଶୁଣୁଛି ଯୁଦ୍ଧରେ ନାମ
ଲେଖାଇଛ ଯିବ ଦୂର ଦେଶ,
ତାରେଁ କି ବନ୍ଧୁ ମୁଁ ଜାଣି,   ଥାଉଁ ଥାଉଁ ତୁମ୍ଭ ମିଳି
ଚିତ୍ତେ କିଆଁ ଭଜିଲ ନିର୍ଘଣ ? ହେ
ପ୍ରିୟତମ !
ମିଳି-କଥା ଥିଲି ତୁମ୍ଭ ବେଦ
ମେଳରେ କେ ପରଜିଲ୍ଲ ଭେଦ ହେ । ୪ ।

କଲେ ମୁଁ ବୀଣା ବାଦନ   ହୋଇଣ ତନ୍ମୟ ମନ
ଚଢ଼ପିଚୁଲାର ସବୁ ରହୁ
ଗୀତ ମୋ ଶୁଣିବା ପାଇଁ   ହୁଅ ଯେ କେତେ ବିନୋଇ
କରୁଣ ଗୀତିତ ମୋ ତାଳ ଲୁହ ହେ
ପ୍ରିୟତମ !
ଲହୁଣୀ ଭଅଁଳ ଘୃତ ବହୁ
ନାରୀ-ଖେଦ ପାରିବ କି ସହୁ ହେ ? । ୫ ।

---

୩ । ହୁତାଶ—ନିଆଁ ।
୪ । ବେଦ — ବେଦପର ଅଲଂଘ୍ୟ ।
୫ । ବିନୋଇ ହୁଅ — ବିନମ୍ର ହୋଇ କହ; ଖେଦ—ଦୁଃଖ ।

ଘୋଡ଼େ ମୋ କଷା ବାଜିଲେ ତା ବକ୍ଷେ ! ତୋଫାନ ଉତ୍ତଳ
ଅନ୍ତରେ ତୁମ୍ଭର ଜାଣେ ମୁହିଁ
ବଜ୍ରବଜା ତରୁ ସବ କରିବ ଅବଳା ନାଶ
କିଏ ବୁଦ୍ଧି ଦେଇଛୁ ବତାଇ ? ହେ
ପ୍ରିୟତମ !
ମିନା-ହୃଦ-କୁମୁଦକୁ ଦଳି
ଦୂର ପଥେ ଯିବ ସତେ ଚଳି ହେ !! । ୬ ।

ନୀଳ ମୁଦ ଷିକ ଦେଇ ମୋ ଜନମ ଦିନ ପାଇଁ
ଆଣିଥିଲ କେତେ ଉପହାର !!
ବଣିଆ ପୁଅକୁ କହି ବୁକରେ ଥିଲ ଲେଖାଇ
“ମିନାରାଣୀ ପାଇଁ ଏ ଅକ୍ଷର ହେ
ପ୍ରିୟତମ !
ପଞ୍ଜାବୀଟିରେ ତା ଦେଲି ଲଗାଇ
ଭାବି “ଗୋଟ ମିନାରାଣୀ ପାଇଁ” ହେ । ୭ ।

ସେ ଦିନ ବିନୟ କରି କହିଲ “ମିନା ସୁନ୍ଦରୀ !
ଗଜରା ହାଟରେ କି ଗୁନ୍ଥି ହାତେ
ଆଣିଛି ଲୁଚାଇ କରି ନ ଦେଖେ କେହି ଯେପରି
ଗଳାରେ ଦେନା ତା ଶୁଚିସ୍ମିତେ !” ହେ
ପ୍ରିୟତମ !
ଏକାନ୍ତେ ପିନ୍ଧାଇ ଦେଉଁ ହାର
ଗଣ୍ଡେ ଗଣ୍ଡ ଛୁଇଁଲ ଟି ମୋର । ୮ ।

---

୬ । ମୋ ଘୋଡ଼େ କଷା ବାଜିଲେ—ମୋଠାରେ ଟିକିଏ ମାତ୍ର ଆଘାତ ଲାଗିଲେ; ବଜ୍ରବଳା—ଚଢ଼କ ପଡ଼ୁଥିବା ।

୮ । ଶୁଚିସ୍ମିତା—ସ୍ୱଚ୍ଛ ହାସିନୀ ।

ହେଲି ଝାଇଫଡ଼ ଜର    ହୋଇ ତୁମ୍ଭେ ଉଚ୍ଚାଖିର
ସେବିଲ କୋଡ଼ିଏ ରାତ ମୋରେ
ଝାଉଁଳା-କୁମୁଦ ସର    ତ ଲଚ୍ଛ କୋଳେ ତୁମ୍ଭର
ସମ୍ଭାଳିଛ ଅହା କି ଅଦରେ ହେ
ପ୍ରିୟତମ !
ଶେଷ ପାଦେ କିଏ ରାତ ଜାଗି
କଷଣେ ହୁଅନ୍ତା ମୋର ଭାଗୀ ହେ ? । ୯ ।

ସେ ଦିନ ଝଡ଼ ତୋଫାନ    ବାଟେ ଭାଜିଗଲା ଯାନ
ସଙ୍କଟେ ପଡ଼ିଲି ଭୀତ ଅତି
ଦେବତା ଅଶିଷ ସର    କାହୁଁ ପଡ଼ୁଁ ଆସି କର
ସକଳ ଅଶଙ୍କା ଦେଲ ଭାଞ୍ଜି ହେ
ପ୍ରିୟତମ !
ହୋଇ ମିଶା-ଅଭୟ-କବଚ
ମିଶା ମନେ ଭୀତ କାପଁ ଉଚ ହେ ? । ୧୦ ।

ମୋ ମୁକୁଳା ବେଣୀ ଦେଖି    ମନେ ସଖା ! ହୁଅ ସୁଖୀ
କହ "ବାଦଲରେ ଚନ୍ଦ୍ର ସର
ଛାଡ଼ି ଦେ ତୁ ମୁଖ ତୋର    ଥରେ ଏଥି ମିଶା ମୋର !
ଶୋଭା ଲଭେ ଲୁଚି ମୋର ଅଖି" ହେ
ପ୍ରିୟତମ !
ମୁକୁଳାଇ ବେଣୀ କାହା ପାଇଁ
ଯିବ ବାତାୟନ ପାଟେ ଧାଇଁ ହେ ? । ୧୧ ।

---

୧୦ । ଅଭୟ କବଚ—ଅଭୟ ଦେବା ପାଇଁ ସାଞ୍ଜୁ, ଭୀତ ଉଚ—ଭୟ-ଭାତ ଉର ।

୧୧ । ବାତାୟନ—ଝରକା ।

ପାଦରେ ନାହିଁ ଅଳତା          କହ କେଡ଼େ ସୁନ୍ଦର ତା ।।
ଲାଜେ ତହିଁ ନ ଲଗାଏ ମୁହିଁ
ଘଞ୍ଚେଁ ଅଞ୍ଜନ-ଗାର          ଲାଜେ ନୋହୁଁ କରେ ଦୂର
ଭାଷ ପୁଣି "ଭୂଷଣ ନ ନାଇ ରେ
ପ୍ରିୟତମା !
ସବୁଠୁଁ ମନୋଜ୍ଞ ଦିଶୁ ମୋରେ ।"
ଲାଜ-ସବତେ ମୁଁ ଝାସି ମରେଁ ହେ । ୧୨ ।

ସାଜିବାକୁ ଫୁଲରାଣୀ          କେତେ ହେ ବନଯୁବାଣୀ
ପଦତଳେ ଦିଅ ମୋର ଡାଳି
କହ ସେ କେଡ଼େ ବିନୋଇ          ଅଗେ ଠିଆ ହେବା ପାଇଁ
କହ ବନ୍ଧୁ ! କେମନ୍ତେ ଏହା ଭଲ ହେ
ପ୍ରିୟତମ !
କେମନ୍ତ ରହିବ ନେବେ ମୋର ?
ଘାତ କେମନ୍ତେ କରିବ ପଥର ହେ । ୧୩ ।

ପାରଇ ମୁଁ ନାହିଁ କଳି          କେସନେ ଅଛ ସମ୍ଭାଳି
ତୁମ୍ଭର ଉଛୁଳା ପ୍ରୀତିସିନ୍ଧୁ
ଅବା ଭ୍ରାନ୍ତ ସମାଚ୍ଛର          ବାଜଛି କାନେ ମୋହର
ସତ କି ତା କହ ପ୍ରାଣବନ୍ଧୁ ! ହେ
ପ୍ରିୟତମ !
ମିମୀକୁ ଭୂତଳେ ଫିଙ୍ଗି ଦେଇ
ଦୂର ପଥେ ଯିବ ସତେ ବାହୁ ହେ । ୧୪ ।

---

୧୨ । ମନୋଜ୍ଞ—ସୁନ୍ଦର ।

ସେନାପତି ହେବ ଯହିଁ ସଇନାଙ୍କ ସାଙ୍ଗ ତହିଁ
ମିନ୍ତା କ ପାରବ ନାହିଁ ରହି ?
ତା ଲାଗି ଉଠ କରେଣି ହେବ ସବୁମନ୍ତେ ସୁଖୀ
ବାହୁକୁ ଦେବ ସେ ବଳ ତହିଁ ହେ
ପ୍ରିୟତମ !
ନାସ୍ତି ନୁହେ ବିଳାସ ସମ୍ଭାର
ସ୍ପୃହ ତାର କବର ଦ୍ୱାରର । ୧୫ ।

ସାହସ ମୋର ଦେଖିଛ ମୋରେ କପାଁ ମୁକୁଳୁଛ
ଏକା କାହାଁ ଯିବ ହେ ବାହାର ?
ଘନେ ଯଥା ସୌଦାମିନୀ "ଗୋଟେ" ତଥା ହେବ "ମିନୀ"
ଅନୁଭବ ଶକତି ତାହାର ହେ !
ପ୍ରିୟତମ !
ଅରଜୁନ ଭଦ୍ରା ସବ ବେନି
ଅଧିଳିକିବା କଳିଙ୍ଗ ଅବନୀ । ୧୬ ।

ଶତ୍ରୁରୁ ଦେଲ ସୁମନ ତୁମ୍ଭଙ୍କୁ ମୋହର ରାଣ
ଅସିବ ବାହାର ଶଠି ପାଇ
ଅଲଂଘ୍ୟ ମିନୀର ରାଣ ଏ ଭରସା ରଖି ମନ
ଲେଖିଲି ପତର ତୁମ୍ଭ ପାଇଁ ହେ
ପ୍ରିୟତମ !
ନ ପାରଇ ବିଚ୍ଛେଦ ମୁଁ ସହି
ଶଙ୍କା ମୋରେ ଅନ୍ତର ମଥାଇ । ୧୭ ।

---

୧୫ । ବିଳାସ ସମ୍ଭାର—ମଉଜ ମଜଲିସ୍‌ର ସାମଗ୍ରୀ; ସ୍ପୃହ—ମୁକୁଳ ହସ ।
୧୬ । ଭଦ୍ରା—ସୁଭଦ୍ରା ।

କହୁଥିଲ ଦିନେ ମୋରେ "ବିରଜିବ ନାହିଁ ତୋରେ"
କି ଦୋଷେ ବିରଜି ଚଳି ଦୂରେ ?
କି ଦୋଷେ ଯାଅ ସମରେ ନ ପଡ଼େ ମିଳି ମନରେ
ଲୁହ ସବୁଠେ ସେ ଡ଼ୁବି ମରେ ହେ
ପ୍ରିୟତମ !
ଆଖି ଲୁହେ ଆଖିର କଜଳ
ଗୋଳାଇ ଲେଖୁଛୁ ଲିପିମାଳ । ୧୮ ।

୧୯୪୫



—୪୨—

## ଉତ୍କଳମଣି ଗୋପବନ୍ଧୁ

( ରାଗ—ଶଙ୍କରାଭରଣ )

ଉତ୍କଳର ପୁରପଲ୍ଲୀ ପ୍ଲାବି ଶୋକରେ
ଦୀନବନ୍ଧୁ ଗୋପବନ୍ଧୁ ! ଅମର ଧାମରେ
ଆହା ରହିଲ କିଣ୍ଟି କେ
ଉତ୍କଳର ଭାଗ୍ୟ ତୋର ଦେଇ କାହା ହସ୍ତେ ? ।୧।

---

୧୮ । ଲିପିମାଳ—ଅକ୍ଷର ସମୂହ ।



୧ । ପୁରପଲ୍ଲୀ—ସହର ଓ ଗାଁ।ଆ ଗଣ୍ଡା; ପ୍ଲାବି—ଭସେଇ, ବୁଡ଼େଇ;
ଅମର ଧାମରେ—ସ୍ୱର୍ଗରେ ।

ଆସିଲେ ବରଷା କାଳଭୁଜଙ୍ଗୀ ସମାନ
ଫେଣ ଫଣା ଟେକି ଗରଜିବେ ନଦୀମାନ
ବନ୍ୟା-ଗରଳ ଉଦ୍‌ଗାରି,
ଜନତାର ସୁଖ ଗୃହେଁ ଗୃହେଁ ଦେବେ ସାରି ।୨।

ସର୍ବହରାଗଣ ଯେବେ ଆଦି ହାହାକାରେ
ମରଣ କବଳେ ପଡ଼ି ଡାକିବେ କାତରେ
ବିଦାରଣ ଅନମ୍ବର
ପାଣି ଫାଟି ହେବ ଲୁହ ଅନ୍ତର କାହାର ? ।୩।

ତୁମ୍ଭେ ତ ଅନ୍ତର ହେଲ ବୁଭୁକ୍ଷୁର ମୁଖ
କାହା ହାତୁଁ ଅଣା ଆଜ କରିବ ଟି ଢୋକ ?
ଢୋକ ପାଣି କିଏ ଦେଇ
ସର୍ବହରା ଉତ୍କଳୀଙ୍କୁ ରଖିବ ବଞ୍ଚାଇ ? ।୪।

ଉତ୍କଳର ଦୁଃଖ ବ୍ୟାଧି ନାଶକ ଭିଷକ
ଉତ୍କଳେ ସ୍ୱରାଜ-ମନ୍ତ୍ର ଆଦ୍ୟ ଉଚ୍ଚାରକ
ଅହେ ଉତ୍କଳରାକେନ୍ଦୁ !
ପ୍ରୟୋଜନ ଅଛି ତୁମ୍ଭ ଆସ ଗୋପବନ୍ଧୁ ! । ୫ ।

---

୨ । ଭୁଜଙ୍ଗୀ—ସର୍ପିଣୀ ।
୩ । ମରଣ କବଳେ—ମରଣ ମୁଁହରେ; ଅନମ୍ବର—ଆକାଶ ।
୪ । ବୁଭୁକ୍ଷୁ—ଭୋକିଲା ଲୋକ
୫ । ବ୍ୟାଧି—ରୋଗ; ଭିଷକ—ବୈଦ୍ୟ; ରାକେନ୍ଦୁ—( ରାକା + ଇନ୍ଦୁ )
ପୂର୍ଣ୍ଣିମାର ପୂର୍ଣ୍ଣଚନ୍ଦ୍ର ।

ଭେଦେ ପଡ଼ି ମରଅଛୁଁ ଅନ୍ଧ ହୋଇ ସ୍ୱାର୍ଥେ
ଶିଖି ଅଛୁଁ ଅର୍ଥ ପୂଜା ଭୁଲି ପରମାର୍ଥେ
ପଶୁଁ ନୀଚତା ଗହ୍ୱରେ
ସତ ମାର୍ଗ ତେଜି ଭ୍ରମୁଁ ଅସତ ରାହାରେ । ୬ ।

ଜୀବନସ୍ରୋତ ଏ ଦେଶେ ହୋଇଛି ପଂକିଳ
ଦୁର୍ଲ୍ଲଭ ହେଲଣି ସଚ୍ଚରିତ୍ର ଅନାବିଳ
ନଷ୍ଟ ହେଲଣି ଆଦର୍ଶ
ସମାଜେ ସଂଚରିବାରୁ ଭୌତିକତା ବିଷ । ୭ ।

ଜନମନନାୟକ ହେ ! ଆସ ଅବତରି
ଆଜି ଥରେ କର ଉଚ୍ଚ ଏହୁ ବସୁନ୍ଧରା
ତୁମ୍ଭ ଆଦର୍ଶର ସ୍ତରେ
ତୁମ୍ଭ ପ୍ରିୟତମ ଦେଶେ ଟେକ ଆଜି ବାରେ । ୮ ।

ପଞ୍ଚଜନ୍ୟ ଶଙ୍ଖ ସମ ଘୋଷୁ ତୁମ୍ଭ ବାଣୀ
ଉଚ୍ଛଳେ ଜୀବନ-ସ୍ରୋତ ବହୁ ହେ ଉଜାଣି
ତୁମ୍ଭ ହାତଗଢ଼ା ଭୂଇଁ
ଧନ୍ୟ ହେଉ ଆଜି ବାରେ ପଦ ତୁମ୍ଭ ଛୁଇଁ । ୯ ।

୧୯୩୭



---

୬ । ଭେଦ—ଦଳାଦଳି, ରାହା—ବାଟ ।

୭ । ଅନାବିଳ—ନିର୍ମଳ; ଭୌତିକତା—ଜଡ଼ବାଦ ।



—୪୩—

# ପିଲଙ୍କ ଉତ୍କଳମଣି

ତୁମ୍ଭ ପରି ପୁଅ ପାଇ ଏ ଓଡ଼ିଆ ଦେଶ
ଧନ୍ୟ ହୋଇ ଗାଉଁ ଅଛି ଗୋପବନ୍ଧୁ ଦାଶ ! ।୧ ।

ଏ ଦେଶର ଦୁଃଖ ଦେଖି ଢାଳୁଥିଲ ଲୁହ
ଭେକା ଭେକେ ହୃଦେ ତୁମ୍ଭ ଉଠୁଥିଲା କୋହ । ୨ ।

ଦୁର୍ଭିକ୍ଷ ପଡ଼ିଲେ ତୁମ୍ଭେ ମାଅବାପ ସରି
ଅନ୍ନ ବାଣ୍ଟି ଦେଶଯାକ ଆସୁଥିଲ ବୁଲି । ୩ ।

ବୁଢ଼ା ଗୁଜଲକୁ ଧରି ହେଲେ ହଁଡ଼ି ବାଡ଼ି
ଖାଲି ଗୋଡ଼େ ଅମଡ଼ା ତ ଯାଉଥିଲ ମାଡ଼ି । ୪ ।

ଦୁଃଖୀରଙ୍କୀଙ୍କର ଯେଣୁ ଥିଲ ତୁମ୍ଭେ ବଳ
ହଁ ରନ୍ତି ତୁମ୍ଭଙ୍କୁ କରି ଆଖି ଛଳ ଛଳ । ୫ ।

ଏ ଦେଶ ଲୋକଙ୍କ ମନୁ ଛଡ଼ାଇଲ ଭୟ
କହୁଥିଲ ଧରିଲେ ଦମ୍ଭ ହୁଏ ନାହିଁ କ୍ଷୟ ! ।୬ ।

ଦେଢ଼ କୋଟି ଓଡ଼ିଆଙ୍କ ଦୁଃଖର ସଙ୍ଗାଳି !
କେଡ଼େ ବେଗେ ଦେହ ଛାଡ଼ି ଗଲ ଆହା ଚାଲି । ୭ ।

ଧନ୍ୟ ସେ ସୁଆଣ୍ଡ ଗାଁ ଅ ଯାହା ମାଟି ଧୂଳି
ଖେଳ ଖେଳି ପିଲାଦିନେ ହୋଇଥିଲ ବୋଲି । ୮ ।

---

୮ । ସୁଆଣ୍ଡ—ପୁରୀ ଜିଲ୍ଲାର ସୁଆଣ୍ଡ ଶାସନ, ଗୋପବନ୍ଧୁଙ୍କ ଜନ୍ମସ୍ଥାନ ।

ଧନ୍ୟ ସତ୍ୟବାଦୀର ସେ ଛୁରନ୍ତା ଦାନ
ଉଚ୍ଚି ସବ ରତ୍ନ ଯହିଁ ଯାପିଲ ଜୀବନ । ୯ ।

ଯାହା କଥା କରଥିଲ ସତତ ଜୀବିକା
ଅମ୍ଭେମାନେ ସେହି ଦେଶ ବାଳକବାଳିକା । ୧୦ ।

ପ୍ରଣତ ଅମ୍ଭର ଘେନ ନମ୍ରୁଁ ହୁ ପଯୁରେ
ସୁକଲ୍ୟାଣ କରୁଥାଅ ଥାଇ ସ୍ବର୍ଗପୁରେ । ୧୧ ।

୧୯୩୯



## ମୋ ଠେକ ମଉଳି

ରାଗ ଅନନ୍ଦ ଭୈରବୀ—ଏକତାଳ

( ମୋତେ ଲଗାନା ରେ ବ୍ରଜ ବଧୂ ଲଟ—ଢଙ୍ଗରେ )

ନଇଁ ପଡ଼ନା ରେ ମୋ ଠେକ ମଉଳ !
ପରପନ୍ଥି-ମୁଖୁଁ ଶୁଣି ମା-ନିନ୍ଦା-ଅବଳ । ଘୋଷା ।
କମଳା-ଲୀଳା-ଅଙ୍ଗନ ଶସ୍ୟ-ଶ୍ୟାମ ଅପଘନ
ଯାହାର ତା ସନ୍ତତ କି ବନ୍ଧ ଭିକ୍ଷା ଥାଳ । ୧ ।

---

୯ । ଯାପିଲ—କାଟିଲ ।
୧୦ । ଜୀବିକା—ଜୀବନର ବେଉସା ।
୧୧ । ପ୍ରଣତ—ନମସ୍କାର; ପୟୁରେ—ପାଦତଳେ ।



୦ । ଠେକ—ଉଚ୍ଚ; ମଉଳ—ମଥା, ପରପନ୍ଥୀ—ଶତ୍ରୁ; ଅବଳ—ସମୂହ ।
୧ । କମଳା—ଲକ୍ଷ୍ମୀ; ଲୀଳାଅଙ୍ଗନ—କ୍ରୀଡ଼ା କରିବାର ଅଗଣା;
ଶସ୍ୟ ଶ୍ୟାମ—କ୍ଷେତରେ ଶାଗୁଆ; ଅପଘନ—ଦେହ ।

ସାଧବେ ଯେଉଁ ବୋଇତ ଲଙ୍ଘି ଣ ସିନ୍ଧୁ ସପତ
ଗଢ଼ିଲେ ଯାର ଅତୀତ ତା ପାଇଁ କି ଭାଳ ? । ୨ ।

ସୁତେ ତାହାର ବିଜୟୀ ସୁତାଏ ମହିମାମୟୀ
ସୁନା ରେଣୁ ନୋହିବ କି ତା ଭୂଇଁର ବାଲି । ୩ ।

ସନ୍ତୁଷ୍ଟ ତା ଦୁଃଖ ମାଘ ନାଶି ମଜ୍ଜାଗତ ଅଘ
ଦିବିବ ସୁଖ-ମାଧବ-ମାସ ଅଗିଜାଳି । ୪ ।

ପ୍ରାଚୀ-କକୁଭ-ରଞ୍ଜନ ନବଯୁଗ-ଉଷାରୁଣ
ଉଦିତ ପରି ପାଟଳ ବଇଭବ ଢାଳି । ୫ ।

ଦୀନ ବିଚ୍ଛନ୍ଦ ଭୂଷିତ ପାଣି ମୋ କୋରକୀକୃତ
ବନ୍ଧି କର ମାଅ-ପଦ୍ମପାଦେ ନଉଛାଳି । ୬ ।

୧୯୩୪



---

୨ । ବୋଇତ—ଜାହାଜ; ସିନ୍ଧୁ ସପତ—ସାତ ସମୁଦ୍ର ।

୩ । ବିଜୟୀ—ଦେଶ ଜିଣିଥିବାଲୋକ; ମହିମାମୟୀ—ଶକ୍ତିମତୀ; ସୁନାରେଣୁ—ସୁନା ଗୁଣ୍ଡି ।

୪ । ଦୁଃଖ ମାଘ—ଦୁଃଖରୂପ ମାଘମାସ; ମଜ୍ଜାଗତ—ହାଡ଼ ମାଉଁସରେ ମିଶିଥିବା; ଅଘ—ପାପ [ ଯଥା :—ଆଳସ୍ୟ, ଭେଦଭାବ ଓ ପରଶ୍ରୀକାତରତା ଆଦି ] ସୁଖ-ମାଧବ-ମାସ—ସୁଖ ରୂପ ମାଧବ ଅର୍ଥାତ (ମଧୁ+ଅ )—ବସନ୍ତ କାଳ; ଅଗି ଜାଳି—ମାଘ ପୂର୍ଣ୍ଣିମା-ଦିନ ଅଗି ଜଳା ଯାଏ ଓ ବସନ୍ତର ଆବାହନ କରାଯାଏ ।

୫ । ପ୍ରାଚୀ—ପୂର୍ବ; କକୁଭ—ଦିଗ; ରଞ୍ଜନ—ରଙ୍ଗିଥିବା; ନବଯୁଗ ଉଷାରୁଣ—ନୂଆ ଯୁଗ ରୂପ ପ୍ରାତଃକାଳର ସୂର୍ଯ୍ୟ; ପାଟଳ ବଇଭବ—ରକ୍ତବର୍ଣ୍ଣ ବା ରକ୍ତିମା ରୂପ ସଂପଦ ।

୬ । ପାଣି—ହାତ, କୋରକୀକୃତ—କୋରକ ଅର୍ଥାତ ଫୁଲ କଢ଼ ପରି କରା ହୋଇଥିବା ଅର୍ଥାତ ପ୍ରଣାମ କରିବା ପାଇଁ ଯୋଡ଼ ହୋଇଥିବା; ବନ୍ଧି—(ଯୋଡ଼ାରେ) ଲଗାଇ; ନଉଛାଳି—ବନ୍ଦନା ।

—୪୫—

# ସ୍ମୃତିକାଭିଷେକ

( ସଗ—ବ୍ରେଣ୍ଟ )

କନମି ମର ସଂସାରେ          ଯୌବନ ରୂପ ସମ୍ଭାରେ
ମଣ୍ଡନ୍ତ ଏ ସ୍କନ୍ଧ ଧରି ଯେତେ ରୂପସୀ
ତା ତହୁଁ ନ ଥିଲା ଉଣା          କୋମଳାଙ୍ଗୀ ଅଧି ଧନ୍ୟା !
ଦୁର୍ଲ୍ଲଭ ଚେତା ଶୋଭା ଗଲା ମାଟିରେ ମିଶି
ଅହା କେଡ଼େ ବେଗେ ମୋ ଧନ !
ମୋ ଦେଖନ୍ତେ ଝଡ଼ିଲା ତୋ ଜୀବନ-ସୁମ । ୧ ।

ଭସ୍ମମୟ ଶୋଭା ତୋର          ବିରି ବିଜନତା ଘୋର
ଶମଶାନ-ମାଟି ସହ ରଚେ ସଙ୍ଗତ
ଜନତା ଗଲେ ସେ ପଥେ          ପାଦରେ ଅତରକତେ
ଦଳିବ ମୋଦରେ ହସି ସେ ମୋ ସମ୍ପତ୍ତି
ବନ୍ଧୁଆ ରେ ! ଜଣକ ଅଙ୍ଗି,
ଏ ନାରଖାର କେବଳ ନ ପାରେ ଦେଖି । ୨ ।

---

ଇଂରାଜ କବି ଲର୍ଡ଼ ବାଇରନଙ୍କ "ଏଲେଜି ଅନ୍ ଥାୟାର୍ଜା" Elegy on thyrza କବିତାର ଓଡ଼ିଆ ସଂସ୍କରଣ ।

୧ । ସମ୍ଭାର—ସମ୍ପଦ; ସ୍କନ୍ଧ—ସୁନ୍ଦର; ରୂପସୀ—ସୁନ୍ଦରୀ; ଧନ୍ୟା—ପ୍ରଶଂସନୀୟା; ମୋ ଦେଖନ୍ତେ—ମୁଁ ଦେଖୁଥାଉଁ; ମୋ ଆଗରେ ସୁମ—ଫୁଲ ।

୨ । ଭସ୍ମମୟ—ପାଉଁଶରେ ପରିଣତ ହୋଇ ଯାଇଥିବା; ବିଜନତା—ନିର୍ଜନତା; ଜନତା—ଲୋକେ; ଅତରକତେ—ଅତର୍କିତେ—ଅଜାଣତରେ; ମୋଦରେ—ଆନନ୍ଦରେ; ସେ ମୋ ସମ୍ପତ୍ତି—ତୋ ମର ଦେହର ପାଉଁଶ; ବନ୍ଧୁଆ—ପ୍ରେମିକାର ମଧୁର ସମ୍ବୋଧନ ।

ତୋ ରୂପ-ବଲ୍ଲରୀ ଯହିଁ ବଜୁଳି ସମ ମିଳାଇ
ଗଲ, ଧନ ! ନ ଭୁଲିବ ସେ ଶମଶାନ
ତହିଁରେ ପୁଷ୍ପ ଗୋଲାପ ଉଠୁ ବା ଘାସ ଅମାପ
ମୋ କାମ୍ୟ ନ ଦେଖିବ ତା ଏ ମୋ ନୟନ
ଜାଣିଲି ମୁଁ ପ୍ରୀତିରେ ଭଳି
ପ୍ରୀତିବତୀ-ପରଣତି ଧରାର ଧୂଳି । ୩ ।

କି ହେବ ସ୍ମୃତି ଫଳକ ଜଣାଇବ ତା ଏତେକ
ଧୂଆଁ ମୁଠାଇବା ସମ ପ୍ରୀତି ବେଭାର
ଶେଷ ଯାଏଁ ବେଣୀ ଜନ କଲଇଁ ପ୍ରୀତି ପାଳନ
ମରଣ ଦାରୁଣ କଲା ଏ ଉପକାର
ପ୍ରୀତିକି ଯା କରେ ଭଙ୍ଗୁର
ତା ତହୁଁ ରଖିଲା ତୋତରେ କରଣ ଦୂର । ୪ ।

---

୩ । ବଲ୍ଲରୀ—ଲତା; ଅମାପ—ଅପରିମିତ; କାମ୍ୟ—ଇଚ୍ଛା, କାମନା; ଭଳି—ଠକ ହୋଇ; ପ୍ରୀତି⋯ଧୂଳି—ପ୍ରେମିକାର ଶରୀର ମାଟିର ଧୂଳି ହୁଏ ।

୪ । ସ୍ମୃତିଫଳକ—ସ୍ମରଣର ଚିହ୍ନ; ଭଙ୍ଗୁର—ଭାଙ୍ଗିଯିବାର; ତା ତହୁଁ—ତା'ଠାରୁ ।

ନାହିଁ ଜଗିଣଙ୍କ ଅଉ      ନାହିଁ ପ୍ରତିଦ୍ୱନ୍ଦ୍ୱ-ଦାଉ
ନାହିଁ ଦୋଷ ଦେଖି ପର କହିବା ଡର,
ଶଙ୍କାରୁ ଦେଇ ମୁକତି      ଚଳିଛୁ ଶମନ କତି
ଥାଉଁ ଥାଉଁ ଷୋଳଅଣା ହୋଇ ମୋହର
"ତୁ ମୋହର ମୁହିଁ ତୋହର"
ଅନ୍ତକ ଅଙ୍କିଲା ଏ ଚୂଡ଼ାନ୍ତ 'ମୋହର' । ୫ ।

ଜୀବନର ମଉଛବ      କଲୁଁ ଏକତ୍ର ଭୋଗ
ରିକ୍ତ ପାତ୍ର ଏକା ଏବେ ବସିଲି ଘେନି
ସୁଖ-ସୁଧାକର-କର      ଦୁଃଖ-ଅମାବସ୍ୟା-ଅନ୍ଧାର
ପରଶିବେ ନାହିଁ ତୋତର ଅଉ ଏ ବେଳ
ସ୍ୱପ୍ନହୀନ ସେ ତୋ ଶୟନେ
ଭାଳନ୍ତେ ନ ଅସେ ଲୁହ ପରି ନୟନେ ! । ୬ ।

---

୫ । ପ୍ରେମିକାର ଜଗ, ପ୍ରତିଦ୍ୱନ୍ଦୀଙ୍କ ଚକ୍ରାନ୍ତ ଓ ପ୍ରେମିକା ନିକଟରେ ଦୋଷୀ ହେବା, ଏ ସବୁ ପ୍ରୀତିକୁ ଭଙ୍ଗୁର କରେ ବା ଭାଙ୍ଗି ଦିଏ । କିନ୍ତୁ ଏ ସବୁରୁ କୌଣସିଟି ଘଟିବା ଆଗରୁ ପ୍ରେମିକାର ମୃତ୍ୟୁ ହୋଇଛି—ତେଣୁ କବିଙ୍କ ସନ୍ତୋଷ । ଶମନ—ଯମ; ଅନ୍ତକ—ଯମ; ଅଙ୍କିଲା ଏ ଚୂଡ଼ାନ୍ତ ମୋହର—ଏହା ମୋହରରେ ଲେଖି ଛାପ ମାରିଦେଲା ଏବଂ ଏ ଛାପ ବଦଳି ପାରିବ ନାହିଁ ।

୬ । ରିକ୍ତ—ଖାଲି; ସୁଧାକର—ଚନ୍ଦ୍ର; କର—କିରଣ; ସ୍ୱପ୍ନହୀନ ସେ ତୋ ଶୟନେ—ତୋର ମୃତ୍ୟୁବେ; ମୃତ୍ୟୁ ମହାନିଦ୍ରା ତହିଁରେ ସ୍ୱପ୍ନ ନାହିଁ ବୋଲି ପାଶ୍ଚାତ୍ୟ କବିଙ୍କ ବିଶ୍ୱାସ ।

ତାଳନ୍ତି ଲୁହ କପାଁଇ ? ପାରୁ ତ ନ ଥାନ୍ତି ସହି

ଦିନୁଁ ଦିନ ଢଳ ଢଳ ହୋ କାନ୍ତିକ୍ଷୟୁ

ଯିବାର ମୁକର ଯଦି ଯିବାର ଭଲ ସପଦି

ରେ ଅକ୍ଷତକାନ୍ତିମତି ! ତୋହ ପସ୍ୱୟୁ;

ସୁଷମାରେ ଯେହୁ ଅତୁଳ

ଅଗ ଯିନା ଧୂଳି ଶେଯ ବରେ ସେ ଫୁଲ । ୭ ।

ପରୁଷ ବର କାହାର ନ ଲାଗୁଁ ଅଙ୍ଗେ ତାହାରୁ

ଖସେ ବୃନ୍ତୁଁ, କାନ୍ଦଇ ତା ପାଇଁ ଦରଦୀ;

ଅସମ୍ଭାଳ ହୁଏନ୍ତା ଶୋକ ବୃନ୍ତେ କାଠୁଁ କାଠୁଁ ପୋକ

ଦଳ ପରେ ଦଳ ହାରି ଝଡ଼ନ୍ତା ଯଦି !!

ସୁଷମାର କେଉଁ ସେନେହୀ

ପଳ ପଳ କ୍ଷୟୁ ତାର ପାରଇ ସହି ? । ୮ ।

---

୭ । ଢଳଢଳ········କ୍ଷୟୁ—ଟିକିଏ ଟିକିଏ ହୋଇ ତୋର ରୂପ କ୍ଷୟ ହୋଇଥିଲେ ତା ମୋର ସୁହା ଯାଇ ନ ଥାନ୍ତା; ମୁକର—ନିଶ୍ଚିତ, ସ୍ଥିର; ସପଦି—ଶୀଘ୍ର; ଚିର ବିଦାୟ ନେବା ଯଦି ସ୍ଥିର ତାହାହେଲେ ହଠାତ୍ ଚାଲିଯିବା ଭଲ । ଅକ୍ଷତକାନ୍ତିମତୀ—ଯାହାର ରୂପ ଦୀପ୍ତି ଅଦୌ ହ୍ରାସ ହୋଇନାହିଁ; ସୁଷମା—ସୌନ୍ଦର୍ଯ୍ୟ ।

୮ । ପରୁଷ—ନିର୍ଦ୍ଦୟ; ବୃନ୍ତ—ଡେମ୍ଫ; ଦରଦୀ—ସ୍ନେହୀ, ପ୍ରେମିକ; ଦଳ—ପାଖୁଡ଼ା; ପଳପଳ କ୍ଷୟୁ—କ୍ରମିକ ବିନାଶ ।

ତୋ ରୂପ ଶଶୀ ପାଣ୍ଡୁର          ହେବା ଏ ନୟନ ମୋର
ପାରିଥାନ୍ତା ଦେଖି କି ରେ ପ୍ରାଣଦୋସର ?
ଅନ୍ତିମ ଦିନର ଜାଣି          ଗାଢ଼ତର ଅଙ୍ଗମଣୀ
ଦିକର ବରଷିଲୁ ପରା ନେଇଁ ଆସାର,
ତୋ ଜୀବନ-ବହ୍ନାୟୁସରେ
କଳା ବଉଦ ତ ଥିଲୁ ନାହିଁ ଲେଶରେ । ୯ ।

ରୂପର ମଶାଲ ସିଏ          ମରଣ ଯାଏଁ ରେ ଗୋରି !
ଜଳିଥିଲୁ ନୋହି କ୍ଷୀଣ ଚଳ ମାହାରେ,
କାଳ ହୋଇ ପ୍ରଭଞ୍ଜନ          ନିର୍ବାପ କଲୁ ବହ୍ନିନ
ଝିଟକିଲୁ ଦୂର ଶୁଣି ଶେଷ ଯାହାରେ,
ନଭୁଁ ଖସି ତାରା-ସୁନ୍ଦରୀ
ଚରମ ଆଭାରେ ତମେ ଝାସିଲୁ ସରି । ୧୦ ।

ନୟନୁଁ ଲୋତକ ତାଳି          ଅଖିରେ କାନ୍ଦିଲି ଭଲି
ଧନ ରେ ! ଶକତ ଯଦି ଥାନ୍ତା ମୋହର
ତୋ ଅନ୍ତିମ ଶେଯ ଠାଇଁ          ଉଜାଗରେ ବସି ନାହିଁ
ଢାଳିଲେ ଅସନ୍ତା ଝରି ଅଶ୍ରୁ-ଆସାର;
ନ ଦେଖିଲି ନୟନ ଭରି
ତୋ ଲପନ-ଗୋଲାପର ଶେଷ-ମାଧୁରୀ । ୧୧ ।

---

୯ । ଶଶୀ—ଚନ୍ଦ୍ର; ପାଣ୍ଡୁର—ପାଉଁଶିଆ; ପ୍ରାଣଦୋସର—ଜୀବନବନ୍ଧୁ; ମଷୀ—କଳାବର୍ଣ୍ଣ; ଆସାର-ବରଷାର ଅସରା; ବହ୍ନାୟୁସ—ଆକାଶ ।

୧୦ । ଚଳମାହାରେ—ଟିକିଏ ହେଲେ; ପ୍ରଭଞ୍ଜନ—ପବନ; ନିର୍ବାପ କଲୁ—ନିଭେଇ ଦେଲୁ; ଶେଷଯାହାରେ—ସଂସାରରୁ ଶେଷ ବିଦାୟ ନେବାବେଳେ; ଆଭା—ଦୀପ୍ତି; ତମ—ଅନ୍ଧାର ।

୧୧ । ଉଜାଗରେ—ଚିଅଁ ଇକରି; ଅଶ୍ରୁଆସାର—ଲୁହର ଅସରା; ନୟନ-ଭରି—ଆଖି ପୂରାଇ ।

କୋମଳ ଅଶ୍ଳେଷେ ପୁଣି ହା ହା ରେ ମୋ ହୃଦମଣି !
କୁସୁମିତ ଅଙ୍ଗଲତା ଭରେ ଜଡ଼ାଇ
ଭାଙ୍ଗି ପଡ଼ିବାର ଦେଖ ନ ଧରିଲ ଦେଇ ଠେକ
ହେଉ ଥିବ ଥିବ ମୋର ପ୍ରୀତିବଡ଼ାଇ ।
ବ୍ୟର୍ଥ କରୁ କରୁ ଅନ୍ତକ
ସାର୍ଥ କରିଥାନ୍ତେ ପ୍ରୀତିକ୍ଷଣ ଅନେକ । ୧୨ ।

ଏ ବିଶ୍ୱ-ଶୋଭା-ଭଣ୍ଡାର ବହିଲ ସୁଷମା ସାର
ଦେବିଗ ମୋତେ କରି ଯାଇ ନାହିଁ ବାରଣ
ତୋ ରୂପକୁ ଜପାମାଳ ଗୁଣକୁ ତୋର ସଙ୍ଗାଳ
କଲି ସରି କାମ୍ୟ କିଛି ନ ଦେଖେ ଧନ !
ଶମଶାନ-କବଳ ପାଇଁ
ଭକ୍ଷ୍ୟ ନୋହେ ଯାହା ତୋର, ଧନ୍ୟ ମୁଁ ତହିଁ । ୧୩ ।

କ୍ଷୟକର କାଳ-କର ଅକ୍ଷମ ପରଶେ ତାର
ତୋ ରୂପଶ୍ରୀ ଗତ, ଅଲମ୍ବନ ତା ହତ,
ହୋଇ ଏବେ ଶକ୍ତାଗତ ଅଶ୍ରିବ ତେଣୁ ନିଯୁତ
ସ୍ମୃତି-ସୁରଭିତ ମୋର ଚିତ୍ତ ନିଭୃତ;
ତୋ ଶ୍ରୀଅଙ୍ଗ-ଚଷକେ ପିନା
ଜୀବନ୍ତ ଅମିୟ ତା ଥିଲା ରେ ନବୀନା ! । ୧୪ ।

୧୯୪୪ 

୧୨ । ଅଶ୍ଳେଷ—ଆଲିଙ୍ଗନ; ବଡ଼ାଇ—ଗର୍ବ ।
୧୩ । ସାର—ଶ୍ରେଷ୍ଠ; ବାରଣ—ମନା; କାମ୍ୟ—ସ୍ପୃହଣୀୟ; ଭକ୍ଷ୍ୟ ନୁହେଁ ଯାହା ଅର୍ଥାତ ତୋ ଗୁଣ ।
୧୪ । କ୍ଷୟକର—ନାଶକାରୀ; କର—ହାତ; ଅଲମ୍ବନ—ଆଶ୍ରୟ; ହୋଇ ଏବେ······ନିଭୃତ—ତୋ ଗୁଣସବୁ ମୋ ହୃଦୟରେ ସ୍ମୃତି ହୋଇ ରହିବେ; ଚଷକ—ପାନପାତ୍ର, ଅମିୟ-ଅମୃତ—ତୋ ଗୁଣ ।



—୫୭—

## ଜହ୍ନ

ଏ ଗୋରା ଜଅଁଳା ପୁଅଟି ବୋଉ !
ଏକା ଅକାଶେ,
ବସିଛି କାହିଁକି ? ତା ବୋଉ ଜିଲ
ନାହିଁ ତା ପାଶେ !

ବଉଦ ସଦା ତା ବୋଉ ଲୋ ତାକୁ
ଜହ୍ନ ତୁ ଡାକ
ଜଅଁଳା ପୁଅକୁ ଛାଡ଼ି ସେ ଉଡ଼ି
ବୁଲେ କାହିଁକି ?

ଡାକ ଅଣି ତାକୁ ମୋ ପାଶେ ହେବ
ସାଥୀ ସେ ମୋର
ଏତେ ଉଚେ ଏକା ବସିଣ
ତାକୁ ମାଡ଼ୁଛି ଡର ।

ଅମ ଘରେ ସେହୁ ରହିବ
ଏକା ଥାଳୀରେ ଖାଇ
ଏକା ବିଛଣାରେ ତୋ କୋଡ଼େ
ଦୁହେଁ ପଡ଼ିବୁଁ ଶୋଇ ।

୧୯୩୯



—୪୭—

## ଅଙ୍କଠ ନିତାଇ

ଟପ ଟପ ଟପ ଟପ ବରଷୁଛି ପାଣି
ସୁଉ ସୁଉ ବହୁଛି ପବନ
ପୁଷି, ଟିପୁ; ଟେଙ୍କା ବାନ୍ଧ ପଡ଼ିଲେଣି ଶୋଇ
ତୁନି ହୁଅ, ଶୁଅ ବାପଧନ ! ।

ଚନ୍ଦ୍ରା ଛୁଅଟି ଖାଲି ବୁଲି ଏଣେ ତେଣେ
ଚଇଁ ଚିଇଁ ଦେଉଛି ବୋବାଇ
ସେ ଯୁଅଡ଼େ ଶୋଇଲେଣି ଅଙ୍ଗିକା ତୋ କଅଁ
ନ ଅସଇ ନିଦ ରେ ନିତାଇ ? ।

ଶୋଇପଡ଼ ବାପ ତୋର ଆଖି ସପନରେ
ଗେଲ କରି ଚୁମା ଦେବେ ମୁହେଁ ।
ସକାଳେ ରାବିଲେ କାଉ, କୋଇଲି, କୁକୁଡ଼ା
ଶେଯ ଛାଡ଼ ଉଠିବା ରେ ଦୁହେଁ ।

୧୯୩୯



—୪—

# ମିନତି ପାଖକୁ ଗୋପ

ରାଗିଣୀ—ବସନ୍ତସିଂହା ଚଢ଼ିତଣା ବା'ଣୀ

(ମଥୁରା ମଙ୍ଗଳର "ଗୋପିକାବଚନ ଶୁଣି ଉଦ୍ଧବ କହନ୍ତି ବାଣୀ"-ବୃତ୍ତରେ)

ମିନା ରେ ! ପଥର ତୋର ହୁଅଇ ମନ୍ଦି ଅନ୍ତର
ହୋଇଗଲୁ କିରେ ବାଇଆଣୀ ?
ଗୋପ ଯିବ ଦୂର ଦେଶ ମିନା ନ ଜାଣିବ ଲେଶ ;
ତୁ ଅହା ଭୁଲିଲୁ ଏହା ପୁଣି ରେ
ପ୍ରାଣମଣି !
ପରବାସ ପୀରତି-ଅଗର
ପୀରତି-ଭାନୁକୁ ନାଶ କର । ୧ ।

ତୋତେ ଧ୍ରୁବ ତାର କର ଭାବେ ମୁଁ ଜୀବନ ଭରି
ଦୂରେ ଥିବା ମୁହିଁ ନ ଗଣଇ,
ଏ ବ୍ରହ୍ମାଣ୍ଡ ସମ୍ପ୍ରଦାୟ ଗୋପକୁ "ମିନତି" ମୟ
ମିନତି ଯା ଏହା ନ ବୁଝଇ ରେ
ପ୍ରାଣମଣି !
ସଂଶୟରେ ହୁଅଇ ଅତୁର
ଗୋଟେ ତାର ମଣିଷ ଇତର[2] । ୨ ।

ଯିବା ପାଇଁ କି ସମରେ ଥିଲି ମୁଁ ଭୁଲି ମନରେ
ନାମ ଲେଖାଇ ମୁଁ ନାହିଁ ତହିଁ
ସପନ ଦେଖିଲି ସବ ପରତେ କର ସୁନ୍ଦର !
କଳପନା ଛାଣି ନେଇ କାହିଁରେ
ପ୍ରିୟତମା !
ଟାଣି ଯେତେ ପୀରତି ଯାହାର
ତା ଆଶଙ୍କା ତେତେ ବଳିଆର । ୩ ।

---

୨ । ଇତର—ପର ।

ଜାଣେଁ ଅରେ ଶୋଭାବତ ! ତୋ ଅନ୍ତରର ଶବତ,
ଚଣ୍ଡୀ ସାଜ୍ଞ ଥାଉ ରୁଦ୍ର ହେଲେ;
ତେଜ ପୁଣି ଉଗ୍ରରୂପ ମୋରେ କରୁଥାଉ ଦ୍ରୂପ
ଶରଣ ଅରପି ପଦ୍ମତଳେ ହେ
ପ୍ରିୟତମା !
ଯାହା ଯାହା ଲେଖିଛୁ ବସ୍ତାର
ଯାଇଛୁ କି ସବୁ ତହୁଁ ସର ? । ୪ ।

ତୋର ମୋର ଯେତେ ଭାବ ଲେଖିଲେ କି ତା ସରିବ ?
ମନେ ଥିବ ଚିହ୍ନାର ଜୀବଧନ !
ଯେବେ ମୁଁ ଜଲ କଜ୍ଜାଳ ଅଳକାରେ ମୁଣ୍ଡବାଳ
ମଣ୍ଡି ଦୁଅ ନୟନ ନନ୍ଦନ ରେ
ଜୀବଧନ !
କହିଲୁ ତୁ "ଭୂଷଣର ଭୂଷା,
କହ ମୋରେ, ଏଥେ କିପାଁ ଆଶା ?"[୫] । ୫ ।

"ଅଳକା ଅମୂଲ୍ୟ ଭୂଷା ମଥାରେ ତୋ କରୁ ଯୋଷା"
ଭାଷିଲି ମୁଁ ଦଶିବ ସୁନ୍ଦର,
ତୋରେ ମଣ୍ଡିବାର ପାଇଁ ଶକତ ତାହାର କାହିଁ ?
ମଞ୍ଜୁଷାରେ ଦୁଏ ନାରଖାରୁ ରେ
ପ୍ରିୟତମା !
କପାଳରୁ ଅଭ୍ର ତୋର ଧାର
ମତନାଇ ତା ଦଶିବ ସୁନ୍ଦର !। ୬ ।

---

୫ । ଅଳକା—ସୀମନ୍ତର ଅଳଙ୍କାର, ଭୂଷଣର ଭୂଷା—ଅଳଙ୍କାରର ଅଳଙ୍କାର ।
୬ । ମଞ୍ଜୁଷା—ପେଡ଼ି; ଧାର—ଧାର ନେଇ ।

ନିସର୍ଗ ଲାବଣ୍ୟମୟି ! ଦିନେ ଦିନେ ଦୟା ବହି
ଋଷିଣୀ ବେଶରେ ହୋଇ ସଜ,
କାଳା-କେଶେ ଖୋସା ପାରି କଟୀରେ ମେଖଳା ଭରି
ଗଳାରେ ଥାଉ ତୁ ମଣ୍ଡି ସ୍ରଜ ରେ
ନିତମ୍ବିନି !
ଧରାପଡ଼ି ଲାଜେ ସଡ଼ି ଯାଇ
ମୋ ପୁରକୁ ଯାଉ ରେ ପଳାଇ । ୭ ।

ଅନ୍ତରେ ହୋଇ ଅଥୟ ! ବାଞ୍ଛି ଦୃଷ୍ଟି-କୁବଳୟ
ବାତାୟନେ ଥାଉ ପଥ ଚାହିଁ
ଆଶାୟୀ ଚାତକ ସରି ମଣି ମୋରେ ଘନ ବାରି
ଯେଉଁ ଦିନ ନ ପାରଇ ଯାଇ ରେ
ପ୍ରାଣବନ୍ଧୁ !
ମୋ ଦଶାକୁ ଦଶା ତୋର ବଳେ
ଭାସେଁ ଦୁହେଁ ଲୋତକ ସଲିଳେ ରେ । ୮ ।

ହେଲେ ପରେ ଦରଶନ ମାନେ ତୁ ବଳାଉ ମନ
ନାସିକା ଫୁଲାଇ କଥା କହୁ;
କଇତବ ଅନାଦରେ କଣି ତୁ ନେଉ ମନରେ
ମାନିନୀ ରୂପରେ ମୋରେ ମୋହୁ ରେ
ପ୍ରାଣମଣି !
କାୟା ଛନ୍ଦ ଛାୟା ମୁଁ ମାତର
କଉମୁଦୀ ମୁଁ, ତୁ ନିଶାକର ରେ । ୯ ।

---

୭ । ନିସର୍ଗ-ଲାବଣ୍ୟମୟୀ—ସ୍ୱାଭାବିକ ସୌନ୍ଦର୍ଯ୍ୟମୟୀ; ସ୍ରଜ—ମାଳ ।
୮ । କୁବଳୟ—ପଦ୍ମ ।
୯ । କଇତବ—ମିଛିମିଛିକା ।

କର ବାସ୍ତ ଶୂନ୍ୟମୟ ଗଲ୍ ତୁ ମାତୁଳାଳୟ,
କଷ୍ଟକେ ମୁଁ ରହିଲି ଏକାକୀ,
ସେ ବେଳର ଚିଠି ମୋର ପଢ଼ିଛୁ; ଥିଲା ଅବର
ବୁଝିବାକୁ କେଉଁ କଥା ବାକୀ ? ରେ
ପ୍ରିୟତମା !
ଲେଖିଲି ମୁଁ ତୋରେ ଫିଙ୍ଗି ଦେଇ
ଯିବ ପୁଣି ଦୂର ପଥେ ବାହ୍ମ !! । ୧୦ ।

ମୋ ସେବା କଥା କପାଁଇ ଲେଖିଛୁ ରେ ଶୋଭାମୟି !
ଖେଳରେ ଯାଅନ୍ତେ ଫାଟି ଛିର
ବାପା ତୁମ୍ଭ ନେଇ ମୋରେ ରଖାଇ ଥିଲେ ଟି ଘରେ
କିଏ ଧାଏଁ ହେଲା ଟି ମୋହର ? ରେ
ପ୍ରିୟତମା !
କାହା ଅଖି ହେଲା ନାହିଁ କଷା
କିଏ ଶୋକେ ହୋଇଲା ବିବଶା ? ୧୧ ।

କେ କହିଲା ଦେହ ଚିର, ରକତ ନେଇ ମୋହର
ଦେହରେ ତାଙ୍କର ବେଗେ ଭର;
କେ ଭାଷିଲା ଦାସୀ ଆଗେ ଚେତା ସେ ନୋହିଲେ ବେଗେ
ନିଯୃତ ମୁଁ ଭକ୍ଷିବ ଜହର ରେ
ପ୍ରିୟତମା !
ଶୋଭାଟର ଏକା ମୁଁ ନୁହେ ବଶ
ଗୁଣେ କିଣି ବନାଇଛୁ ଦାସ ରେ । ୧୨ ।

ଦୂରେର ଅଛୁ ଭୋଳି ମୁହିଁ    ମନ ମାର ଦେବୁ ନାହିଁ
ପୀରତରେ ନାହିଁ ଦୂରାଦୂର
ହୃଦୟର ମେଳ ଯହିଁ    ଗଉଣ ଶରୀର ତହିଁ
ମୁହିଁ କେକୀ ତୁହି ଜଳଧରରେ
ପ୍ରାଣମଣି !
ନିଦାନ ତୁ ଉଲ୍ଲାସର ମୋର
କୁମୁଦ ମୁଁ ତୁ ତ ଶଶଧର । ୧୩ ।

ଏତେକ ତୋରେ ମାଗଇଁ    ଥାଉଁ ମୁଁ ଜୀବନେ ରହି
ଚିନ୍ତା-ପୋକ ନ କାଟୁ ତୋ ଉର
କୁଶପାଣି-ଆରାମର    ତୁହି ରେ ସୁମନା ବର
ଅଟୁ ସାର ସୁଷମାର ପୁର ରେ
ଶୋଭାରାଣି !
'ଗୋପ'ର ତୁ ଜୀବନ ଦ୍ୱିତୀୟ
ତୋ ଦେଖି ତା ବିଶ୍ୱ ଶୋଭାମୟ । ୧୪ ।

କଳ୍ପନାରେ ଧର ପାଣି    କହୁଛୁ ସୁନ୍ଦରୀରାଣି !
ଏ ବିଚ୍ଛେଦ ନିଶା ଯିବ ପାହି
ନୋହିବ ମୁହିଁ ତୋହର    ଏ ଚିନ୍ତା ପୂରାଇ ଉର
ବାଉଅଣୀ ସର ଦେବୁ ନାହିଁ ରେ
ପ୍ରିୟତମା !
ଗୋପ ତା ପରାଣେ କର ପୂଲ
ପୂଜଇ ତୋ ଚରଣ ଅତୁଳ । ୧୫ ।

---

୧୩ । ଗଉଣ—ଅପ୍ରଧାନ; କେକୀ—ମୟୂର; ଜଳଧର—ମେଘ ।
୧୪ । କୁଶପାଣି-ବିଧାତା; ଆରାମ-ବଗିଚା; ସୁମନାବର-ଶ୍ରେଷ୍ଠ କୁସୁମ, ଫୁଲ ।

ଅସିଛୁ ଘରୁ ପଡର                    ସେ ଦିନ ନାଟକର

ଯେବେ 'ଭଦ୍ରା ଅରଜୁନ' ସର

ଦଳ ସକଳ ସଂଗଠ                    ହୋଇବା ଅତ ନିକଟ

ବେଘାରେ ବେନାଏଁ ବେଣ୍ଣାଙ୍କରି ରେ

ପ୍ରିୟତମା !

ତେଣିକି ହୋଇଲେ ଅନୁମତ

ଦାସ ସିନା କରବ ରେ ଗତ । ୧୬ ।

ଦାମିନୀ ବନୁଁ ନୀରଦ                    ଶୋଣ ବନୁଁ କୋକନଦ

ନ ରଞ୍ଜିନ୍ତ ନୟନ କାହାର

ମିନତ ବନୁଁ ଗୋପାଳ                    ଜୀବନ ସିନା ନିଷ୍ଫଳ

ଏକ ଶ୍ୱାସ ନାସାଛି ଅପର ରେ

ପ୍ରିୟତମା !

ଗୋପ ଏବେ ହେବ ମାଳାକର

ଅବୁନିଁ କରବ ଫୂଲ ଜୁର ରେ । ୧୭ ।

ଅହା ରେ ବର ସୁମନା !                    ବରଷି କରୁଣା ଅନା

ମାଜି ରଖ ମାନସ ମୁକୁର

ସଂଶୟ ଖେଦ ଶୀକର                    କରନ୍ତୁ ତା ଜର ଜର

ନ ବହଇ ବାମ୍ଫ ତା ଗୋପର ରେ

ପ୍ରିୟତମା !

ଗୋପ ପ୍ରେମ ହେମ ସିଂହାସନ

ମାନ ଜଣେ କରଇ ମଣ୍ଡନ ରେ ।୧୮।

---

୧୬ । ଦାମିନୀ—ବଜୁଳି; ଶୋଣ—ଲାଲବର୍ଣ୍ଣ; କୋକନଦ—ଲାଲକଇଁ;
ମାଳାକର—ମାଳୀ ।

ନୟନ କମଳୁଁ ନୀର    ମାର୍ଜନ ମୋ କର ଦୂର
କଣ୍ଟକରେ ଉଇଁବ ଜାକଟେ
ଲେଖିଛନ୍ତି ପିତା ତୋର    ହେବ ଶୀଘ୍ର ବାହାଘର
ସେ କୋଠାରେ ମହାନଦୀ ତଟେ ରେ,
ପ୍ରିୟତମା !
ପ୍ରଭାତବ ବରହର ନିଶା
ଉଜ୍ଜ୍ୱଳ ହସିବ ମେଳ-ଉଷା । ୧୯ ।

ସାଜ ଭଦ୍ରା, ଅରଜୁନ    ମିଳିବ ତୋର ବହନ,
ଜହ୍ନାସେ ହସିବେ ଦଗବାଳୀ
ଉଇଁବ ତୋଷ ତପନ    ବରଷା ହେବ ସୁମନ
ଶୁଭିବ ସାନନ୍ଦ ହୁଳହୁଳରେ
ପ୍ରିୟତମା !
ଲୁଚିବ ତୋ ଅଶୁଭ-ସପନ
ଅମୋଦବ ଶୁଭ ଶଙ୍ଖସ୍ୱନ । ୨୦ ।

୧୯୪୫



---

୧୯ । ମେଳ—ମିଳନ ।



—୪୯—

# ଖଣ୍ଡାୟତ

( ରାଗ—ଶଙ୍କରାଭରଣ )

ଆସ ଆସ ଉତ୍କଳର ଅସିଜୀବୀକୁଳ !
ମାତୃ ପୂଜା ପୀଠେ ଅଜ୍ଞ ହୋଇ ସର୍ବେ ଠୁଳ
ଭେଦାଭେଦ କର ଦୂର
ପୂଜିବା ଜନନୀ-ରଙ୍ଗ-ରାଜୀବ-ପୟର । ୧ ।

ବକ୍ଷରୁ ଶୋଣିତ ଢାଳି ତୋଷି ରଣଚଣ୍ଡୀ
ଜନନୀ-ମଙ୍ଗଳ ଆହା ଥିଲେ ଯେଉଁ ମଣ୍ଡି
ସ୍ୱାଧୀନତା କଣ୍ଠରେ
ତାଙ୍କର ଦାୟାଦ ତୁମ୍ଭେ ହେଉନାହଁ ଥରେ ।୨।

ଶିଖ, ଗୁର୍ଖା, ରାଜପୁତ ମାନେଗଲେ ହାରି
ସ୍ୱାଧୀନତା-ଦୀପ ନିଭିଗଲେ ଭାରତର
ଉତ୍କଳର ଖଣ୍ଡାୟତ !
ତଥାପି ତ ଶିର କଲ ନାହିଁ ଅବନତ । ୩ ।

ସେ ଓଜ ଥାଆନ୍ତା ଯେବେ ହୋଇ କାରେ କୁଳି
ବିଦେଶେ ଯାଆନ୍ତ ଛାଡ଼ି ନିଜ ସ୍ଥଳ ଭୁଲି ?
ଦେଶେ ବସନ୍ତ ଅଳସେ
ପିତୃ-ପିତାମହ ଗାଥା ସଞ୍ଚି ଇତିହାସେ ? ।୪।

ଇଂରାଜ ରାଜତ୍ୱେ ବୀର ପଡ଼ୋଶି କାତଏ
ଶୂରତାର ପରିଚୟ ନ ଦେଉଛ କାଏ ?
ହୋଇ କାହାର ସନ୍ତାନ
ଅବନତ-ଶୀର୍ଷ ଭଲ ଲଲାଟ-ଭୂଷଣ ।। । ୫ ।

ସେ ଝୀଙ୍କା ପକାଅ ପୋଛୁ ଉଠ ଖଣ୍ଡାଯୁତ ।
ଭାଗ୍ୟଲକ୍ଷ୍ମୀ ଜାଣ ସଦା ବୀରର ଆୟତ୍ତ;
ଦେଶ ମେରୁଦଣ୍ଡ ହୋଇ
ଶୁଅ ଯେବେ ଉଠିବ କି ଏ ଉତ୍କଳ-ମହୀ ? ।

୧୯୩୨



—୫୦—

# ଆଗୃଧି ହରିହର

ଏ ଉତ୍କଳ ଧାମେ ତୁମ୍ଭ ଚରିତ ପାବନ
ହେ ଅଗ୍ରୃଧି ! ତୁମ୍ଭେ ସେବାଧର୍ମ ମୂର୍ତ୍ତିମାନ ।
ଚରିତ୍ର ପ୍ରଭାରେ ତୁମ୍ଭ ଉଜ୍ଜ୍ୱଳ ଏ ଦେଶ
ଚନ୍ଦ୍ରେ ଅଛି ମସୀ ନାହିଁ ତୁମ୍ଭଠାରେ ଲେଶ । ୪ ।

ଗୁରୁ ବୋଲି ଡାକିବାର ପୁଣ୍ୟ ଅଧିକାର
ଥିବାରୁ ଗରବେ ଆଜି ଭରେ ମୋ ଅନ୍ତର ।
ଗୁରୁଦେବ 'ସତ୍ୟବାଦୀ' ଶିକ୍ଷା-ଅୟତନେ
ଅଗ୍ରୃଧି ବିଗ୍ରହ ତୁମ୍ଭ ସେ ଦିନ ନୟନେ । ୮ ।

ଅଗୃଧି ହରିହର—ସତ୍ୟବାଦୀ ସ୍କୁଲରେ କବିଙ୍କର ଗୁରୁଦେବ; ବର୍ତ୍ତମାନ ଉତ୍କଳର ସୁନାମ ଧନ୍ୟ ସେବକ ।

୨ । ଶିକ୍ଷାୟତନ—ସ୍କୁଲ ।

ସାଧନ-କୁଟୀରି ମଧ୍ୟେ ଦେଖିଲି ପ୍ରଥମେ
ଭାଳିଲି ଅଛିଲି ଭାଗ୍ୟ ସତେ ସେ ଆଶ୍ରମେ !!
ଯହିଁ ଉଠି ବେଦଧ୍ୱନି, ଜଳି ହୋମାନଳ
ଦହୁଥିଲା ଭୂଭାରତ କଳୁଷ ପଟଳ । ୧୨ ।

କ୍ଷୀଣ ଦେହ ତୁମ୍ଭ ପୁଣ୍ୟ ପୁଞ୍ଜର ନିଳୟ;
ଦେବାୟତନ ସମାନ ସିନା ବନ୍ଦନୀୟ ।
ଚର୍ମସାର ସୁଖରଙ୍ଗ ହେଲେ ପଦେ ଦଳି
ସାଧକ ! ସାଧନ ମାର୍ଗେ ଯାଅ ତୁମ୍ଭେ ଚଳି । ୧୬ ।

ଅଭାଜନ ଗୋଷ୍ଠୀ ମଧ୍ୟ ପଥ ପାର୍ଶ୍ୱେ ରହି
ମାଗୁଛୁ ଚରଣରଜ ଯାଅ ଦୂରେ ! ଦେଇ । ୧୮ ।

୧୯୩୯



---

୧୦ । ସେ ଆଶ୍ରମେ—ଅତୀତ ଯୁଗର ଋଷି ଆଶ୍ରମକୁ ।
୧୨ । କଳୁଷ ପଟଳ—ପାପ ସମୂହ ।
୧୬ । ଚର୍ମସାର—ଯାହା ଚମର ଅପେକ୍ଷା ରଖେ ଅର୍ଥାତ ଇନ୍ଦ୍ରିୟ ଭୋଗ ।
୧୭ । ଅଭାଜନ—ଅଯୋଗ୍ୟ, ଅନୁପଯୁକ୍ତ ।
୧୮ । ରଜ—ଧୂଳି ।



—୬୧—

# ଆଲେକ୍‌ଜାଣ୍ଡର ଦସ୍ୟୁ ସମାନ ଉଭୟେ !!

( ମୂଳ ଇଂରାଜୀରୁ ଅନୂଦିତ )

[ ଏକଦା ଦିଗ୍‌ବିଜୟୀ ମାସିଡୋନିଅ ଅଧୀଶ୍ୱର ମହାବୀର ଅଲେକ୍‌ଜାଣ୍ଡରଙ୍କ ନିକଟକୁ ଥ୍ରେସ୍‌ରାଜ୍ୟବାସୀ ଜଣେ ଦସ୍ୟୁ ଧରା ହୋଇ ଆସିଲା । ଏ ଦସ୍ୟୁର ଅତ୍ୟାଚାରରେ ଥ୍ରେସ୍ ଓ ଥ୍ରେସ୍ ନିକଟବର୍ତ୍ତୀ ଅନ୍ୟାନ୍ୟ ରାଜ୍ୟ ସର୍ବଦା ବ୍ୟସ୍ତରେ କମ୍ପୁଥିଲା । ଅଥଚ ବହୁ ଚେଷ୍ଟା କରି ସୁଦ୍ଧା ଅଲେକ୍‌ଜାଣ୍ଡର ଏ ଦସ୍ୟୁକୁ ଦମନ କରି ପାରୁ ନ ଥିଲେ । ଦସ୍ୟୁକୁ ଶୃଙ୍ଖଳାବଦ୍ଧ ଦେଖି ଅଲେକଜାଣ୍ଡର ଅବକ୍ତ ଚକ୍ଷୁ ହୋଇ ପ୍ରଶ୍ନ କଲେ । ].

ଅଲେକ୍‌ଜାଣ୍ଡର—ତୁହି କି ରେ ଥ୍ରେସ୍‌ବାସୀ ଦସ୍ୟୁ ଦୁରାଚାର
ଅତ୍ୟାଚାର ଗାଥା ଯାର ଶୁଣି ମୁଁ ନିରତେ
ବଧିର ହେଲାଣି ମୋର ଶ୍ରବଣ ଯୁଗଳ ? । ୩ ।

ଦସ୍ୟୁ— ବନ୍ଦୀ ତୁମ୍ଭ ଦସ୍ୟୁ ନୁହେଁ, ଥ୍ରେସ୍ ରାଜ୍ୟବାସୀ
ଯୋଦ୍ଧା ସେହୁ, ସସମ୍ମାନ କରେ ସମ୍ବୋଧନ ।୪।

ଅଲେକ୍‌ଜାଣ୍ଡର—ପ୍ରଜା-ପ୍ରାଣ-ବିତ୍ତହାରୀ ଆରେ ନରାଧମ !
ରାଜଶକ୍ତିର ମୋର କରି ଅପମାନ
କି ସାହସେ ଯୋଦ୍ଧା ବୋଲି ଦେଉ ପରିଚୟ ?
ଦସ୍ୟୁ, ଅତତାୟୀ ତୁହି ଦେଶର କଣ୍ଟକ । ୯ ।

---

୧ । ଦୁରାଚାର—ଦୁର୍ବୃତ୍ତ; ନିରନ୍ତେ—ସର୍ବଦା; ଶ୍ରବଣ—କାନ; ଯୁଗଳ—ଦୁଇ ।

ଦସ୍ୟୁ— ଅଜି ମୁଁ ଅଯୁତେ ତୁମ୍ଭ, ଦରଷ୍ଟାର ବାଣୀ
ଭଷି ପାର, ବନ୍ଧ ପାର ଶାସ୍ତି ମନୋମତ,
ଶଙ୍କିତ ବ୍ୟଥିତ ହେଲେ ନୁହେଁ ମୁଁ ତା ପାଇଁ ।
କିନ୍ତୁ ହେ ନରେଶ ! ଯଦି ଦିଅ ଅନୁମତି
ତୁମ୍ଭ ଦରଷ୍ଟାରର ମୁଁ କରି ପ୍ରତିବାଦ
କରିବି ପ୍ରମାଣ ମୁହିଁ ଯୋଦ୍ଧା, ନୁହେଁ ଦସ୍ୟୁ ।୧୫

ଅଲେକ୍‌ଜାଣ୍ଡର—ସ୍ୱଚ୍ଛନ୍ଦରେ ଭଷ ଯାହା ଅଛୁ ଭଷିବାର
ଅଭିଯୁକ୍ତ ବ୍ୟକ୍ତି କେବେଁ ନୁହଇ ଦଣ୍ଡିତ
କରିବା ଅଗରୁ ଆତ୍ମପକ୍ଷ ସମର୍ଥନ । ୧୮ ।

ଦସ୍ୟୁ— ପ୍ରଶ୍ନେକ ପଗ୍ଭରେଁ ତେବେ ତୁମ୍ଭେହେ ନରେଶ !
କି କାର୍ଯ୍ୟେ ବ୍ୟାପୃତ ରହି ଯାପୁଛ ଜୀବନ ? ।୨୦।

ଅଲେକ୍‌ଜାଣ୍ଡାର—ଜୀବନ ଯାପଇଁ ମୁହିଁ ବୀରର ସମାନ
ଦଶଦଶ ଘୋଷେ ମୋର କୀରତି ବିମଳ
ମୋହ ତୁଲ ଦିଗ୍‌ବିଜୟୀ ବିକ୍ରମୀ ସମ୍ରାଟ
ଧରପୃଷ୍ଠେ କହ କାହିଁ ଅଛୁ କି ଦ୍ୱିତୀୟ ? ।୨୪।

---

୭ । ବନ୍ଧ—ସମ୍ପଦ ।

୧୭ । ସ୍ୱଚ୍ଛନ୍ଦରେ—ବିନାଭୟରେ ।

୨୦ । ବ୍ୟାପୃତ—ନିଯୁକ୍ତ ।

ଦସ୍ୟୁ— ଆପଣା ପ୍ରଶଂସା ଆପେ କରିବା ବାସନା
ନାହିଁ ମୋର, ହେ ନରେଶ ! ନୁହେଁ, ତା ଉଚିତ !
କିନ୍ତୁ ତାହା ଆବଶ୍ୟକ ଆଜି, ଘଟେଁ ଶୁଣ ।
ମୋ ଯଶ, ଭାରତ ମଧ୍ୟ ମୋ ଦେଶ ବାହାରେ
ପରିବ୍ୟାପ୍ତ ! ସେନାପତି ଦ୍ୱିତୀୟ ମୋ ତୁଲ
ନ ବହେ ଥ୍ରେସ୍ ଅରଣ୍ୟ; ଜାଣିଛ ଆପଣେ
କି ଆୟାସ ହେଲ ଲୋଡ଼ା, କେତେ ପ୍ରାଣପାତ
କରିବା ପାଇଁକି ମୋରେ ଧୃତ, ବଶୀଭୂତ !! ।୩୨।

ଆଲେକ୍‌ଜାଣ୍ଡର—ଯେତେ ଯାହା କହ ପଛେ ନିଜକୁ ପ୍ରଶଂସି
ଅତତାୟୀ ଛଡ଼ା ଅନ କିସ ତୁ ପାମର ? ।୩୪।

ଦସ୍ୟୁ— କରିବାକୁ ପ୍ରଶ୍ନ ଆଜ୍ଞା ହେଉ ହେ ନରେଶ !
ଦିଗ୍‌ବିଜୟୀ ତେବେ କିସ ? ଦିଗ୍‌ବିଜୟ ଆଶେ
କାଣି କି ନାହଁ ହେ ତୁମ୍ଭେ ତୁଚ୍ଛ ଆଧିପତ୍ୟ
ଉତ୍‌କଟ ଅନସ୍ଥାଗ୍ନିରେ ବଧି ଲକ୍ଷ ଲକ୍ଷ
ମହାପ୍ରାଣୀ ?ି ନିର୍ବିଘ୍ନରେ ଲୁଣ୍ଠି କେତେ ରାଜ୍ୟ !!
ଶତ ଅନୁଚର ଘେନି ଏକଇ ପ୍ରଦେଶେ
କରଅଛୁ ମୁହିଁ ଯାହା, ଲକ୍ଷ ସୈନ୍ୟ ଘେନି
ଶତ ଶତ ପ୍ରଦେଶେ ତା କରଅଛ ସ୍ୱୟଂ ।
ସର୍ବନାଶ ସାଧୁଛୁ ମୁଁ ସାମାନ୍ୟ ପ୍ରଜାଙ୍କ;

---

୨୫ । ବାସନା—ଇଚ୍ଛା ।
୨୯ । ପରିବ୍ୟାପ୍ତ—ବ୍ୟାପିଥିବା; ତୁଲ—ସମାନ ।
୩୧ । ଆୟାସ—ପରିଶ୍ରମ; ପ୍ରାଣପାତ—ଜୀବନ ନାଶ ।

ଅତ୍ୟାଗ୍ରରେ ତୁମ୍ଭ କିନ୍ତୁ ସହସ୍ର ଭୂପତି
ମୁକୁଟ ହରାଇ ଅଜି ପଥର ଭିକାରୀ ।
କତିପୟ ଗୃହର ମୁଁ ସାଧୁଛୁ ଉଚ୍ଛେଦ,
କତିପୟ ଗ୍ରାମମାନ କରିଛୁ ଲୁଣ୍ଠନ ।୪୬।
କିନ୍ତୁ ହେ ନରେଶ ! ତୁମ୍ଭେ ରାଜ୍ୟ ଅଗଣନ
କରିଅଛ ଛାରଖାର ଭୂଲୁଣ୍ଠିତ କରି
ଶତ ଲକ୍ଷ ନଗରୀର ସୌଧ ଚୂଡ଼ାବଳୀ ।
ତୁମ୍ଭ ମୋହ ମଧ୍ୟେ ତେବେ କାହିଁ ବା
ପ୍ରଭେଦ ?
ନୀଚ କୁଳେ ଜନ୍ମ ମୋର; ପରିଚୟ ପୁଣି
"ଥ୍ରେସବାସୀ ଦସ୍ୟୁ" । ତୁମ୍ଭେ ଜାତ ରାଜକୁଳେ
ଦିଗ୍‌ଜୟୀ ସମ୍ରାଟ ବୋଲି ବ୍ୟାପେ ତୁମ୍ଭ ଖ୍ୟାତି ।
କିନ୍ତୁ କହ, ଭେଦ କାହିଁ ଅଛି ଲୁକ୍କାୟିତ
ତୁମ୍ଭ ମୋହ ବୃତ୍ତି ମଧ୍ୟେ ବୀର ଚୂଡ଼ାମଣି ! ।୫୫।

---

୪୫ । କତିପୟ—କେତେକ; ଉଚ୍ଛେଦ—ବିନାଶ ।

୪୬ । ଲୁଣ୍ଠନ—ଲୁଟି ।

୪୭ । ନରେଶ—ସମ୍ରାଟ ।

୪୮ । ଭୂଲୁଣ୍ଠିତ—ଭୂଇଁରେ ମିଶାଇ ଦେଇ ।

୪୯ । ସୌଧ ଚୂଡ଼ାବଳୀ—ଉଆସର ଶିଖର ।

୫୪ । ଅଛି ଲୁକ୍କାୟିତ । ଲୁଚିଅଛିଟି

୫୫ । ବୀରଚୂଡ଼ାମଣି—ବୀରଶ୍ରେଷ୍ଠ ।

୫୬ । ଅସି—ଖଣ୍ଡା ।

ଆଲେକ୍‌ଜାଣ୍ଡର—ଅନେକ ବିଭବ ମୁହିଁ କରିଛି ଲୁଣ୍ଠନ
ସତ୍ୟ, ମୋ ବିଜୟୀ କର ତେଜ ପୁଣ ଅସି
ବିତରିଛି ଅକାତରେ ଲୁଣ୍ଠିତ ସମ୍ପତ୍ତି
ଦରିଦ୍ର ଗୋଷ୍ଠୀରେ । ମୁହିଁ ଭାଙ୍ଗିଛି ଯେସନେ,
ଗଢ଼ିଛି ତେସନେ କେତେ ମାନବ ବସତି ।
ଯେତେ ରାଜ୍ୟ ହୋଇଅଛି ବିଜୟେ ମୋ ଲୁପ୍ତ,
ତେତେ ଅବା ତତୋଽଧିକ ସୃଜିଛି ମୁଁ ରାଜ୍ୟ ।
ମୋ ଉଦ୍ୟମେ ମୋହ ଯତ୍ନେ ହୋଇଛି ଉନ୍ନତ
ମାନବ ଜାତିର ଶିଳ୍ପ ବାଣିଜ୍ୟ ଦର୍ଶନ । ୬୬

ଦସ୍ୟୁ— ମୁଁ ଯଦି ହରିଛି ଧନ ଧନୀଙ୍କ ଅଗାରୁଁ
ନିଃସ୍ୱ ଜନ ଗୋଷ୍ଠୀ ମଧ୍ୟେ ବିତରିଛି ତାହା ।
ଦହିଛି ଯେସନେ ଗୃହ ଧନୀଙ୍କ ଜନଙ୍କ
ତେସନେ ନିର୍ମାଣି ଅଛି କରି ଧନବ୍ୟୟ
ଅନେକ ଅନାଥ ଜନ ବସତି ମୋ ଦେଶେ ।୬୮
ଏକପକ୍ଷେ କରିଅଛି ଅତ୍ୟାଚାର ଯେତେ,
ଅନ୍ୟପକ୍ଷେ ଉଦ୍ଧରିଛି ଦୁସ୍ତର ବିପଦୁଁ
ଅନେକ ବିପନ୍ନ ଜନେ । ଦର୍ଶନ ଶାସ୍ତ୍ରର
ନ ଜାଣେଁ ବିନ୍ଦୁ ବିସର୍ଗ; ମୁଁ ଅଜ୍ଞ ନିରକ୍ଷର

---

୬୭ । ଅଗାରୁଁ—ଘରରୁ ।

୬୮ । ନିଃସ୍ୱ—ଦରିଦ୍ର, ଦହିଅଛି—ଜାଳି ଅଛି ।

୬୯ । ଦୁସ୍ତର—ଯହିଁରୁ ପାର ହେବା କଠିନ ।

କିନ୍ତୁ ଜାଣେ ଧ୍ରୁବ କର ତୁମ୍ଭେ ଅବା ମୁହିଁ
ଜଗତର କର ଆଗେଁ ଯେତେକ ଅନିଷ୍ଟ
କୋଟି ଅଂଶେ ଉତ୍କଳର ଷତର ପୂରଣ
ଏ ଜନ୍ମେ ପାରିବା ନାହିଁ କରି ସାରମଣି ! ।୭୯।

ଅଲେକ୍‌ଜାଣ୍ଡର—( ଶାନ୍ତ ହୋଇ )
ରେ ପ୍ରହରି ! ଅସ ଶୀଘ୍ର ଫିଟାଅ ବନ୍ଧନ
ଶୃଙ୍ଖଳ ଏ ବନ୍ଦୀ ପଦୁଁ ।
[ ବନ୍ଦୀ ମୁକ୍ତ ହୋଇ ବିଦାୟ ନେଲା ପରେ । ]

( ସ୍ୱଗତ )

ତେବେ କ ଦସ୍ୟୁ ବିଜୟୀ
ଅଲେକ୍‌ଜାଣ୍ଡର ଦସ୍ୟୁ ସମାନ ଉଭୟେ ? ।୮୦।



୮୦ । ତୂର୍ଣ—ଶୀଘ୍ର ।

୮୧ । ଶୃଙ୍ଖଳ—ଶିକୁଳି ।



—୫୨—

# ଲକ୍ଷ୍ମଣ ଶକ୍ତିଭେଦରେ ରାମ ବିଳାପ

( ରାଗ—କଳହଂସ କେଦାର )

ରାମ-ଦକ୍ଷିଣକର ବାବୁ ଲକ୍ଷ୍ମଣ !
ଭୁଲିଲେ ଶୋକ କିପାଁ ହୋଇ ମଉନ ?
ଡେରିଥାଉ ଶ୍ରବଣ ଡାକକୁ ମୋର
ଉଚ୍ଚା ପଡ଼ାଇ କାନ୍ଦେ ନ ଜନ୍ତୁ ଗିର ।

ଦେହ ସଙ୍ଗତେ ଯେସନେ ଥାଏ ରେ ଛାଇ
ତେସନେ ସହଣେ ମୋର ଥାଉ ତୁ ଭାଇ !
ଯାଇ ମୋ ସୁଖ ମୋତେ ଏକାକୀ କରି ।
କହ ତୁ କେଉଁ ଦେଶେ ଗଲୁ ବାହାରି ।

ସାକେତ-ରାଜପୁରୀ ସୁଖ ହେଳାରେ
ବରଜି ବସିଲୁ ତୁ ଦୁଃଖବେଳାରେ,
ଦୁଃଖୀ ରାମ ପାଇଁ ତୁ ବରିଲୁ ଦୁଃଖ
ଲୋତକେ ଧୋଇ ବୋହୂ ଊର୍ମିଳା ମୁଖ

---

୨। ଶ୍ରବଣ—କାନ ।

୩। ସାକେତ—ଅଯୋଧ୍ୟା; ଊର୍ମିଳା—ଲକ୍ଷ୍ମଣଙ୍କ ଭାର୍ଯ୍ୟା ।

ବଇଦେହୀ ରେ ଆଉ କି ପ୍ରୟୋଜନ
କି ହେବ ଆଉ ଜାଣିଲେ ବା ରାବଣ ?
ଦୁଃଖ ତାପେ ତାପିତ ଯାହାର ଉର
କି ଶୋଭା ଲଭିବ ତହିଁ ସୁମନହାର ?

ମିଳନ୍ତି ପୁଂସେ ଦେଶେ ଦେଶେ ବନିତା
ମିଳନ୍ତି ବନ୍ଧୁ, ମିଳେ ନାହିଁ ତ ଭ୍ରାତା ।
ଭ୍ରାତା ପଦ ଦୁର୍ଲ୍ଲଭ ମର ସଂସାରେ
ତୋ ସମ ଭ୍ରାତା ପୁଣି ଶହ ଲକ୍ଷରେ ।

ଗଲେ ଅଯୋଧ୍ୟା ସଙ୍ଗେ ଘେନି ମୁଁ ସୀତା
କି ବୋଲି ବୋଧିବ'ଟି ସୁମିତ୍ରା ମାତା ?
ସେ ପୁଣି କି ବୋଲିଣ ବୋଧିବେ ବୋହୂ
ଶୋକ ପାବକ ଯେବେ ଜଳିବ ହୁହୁ ?

ମୁଁ ଗଲେ ଆଗେ, ପଛେ ଯିବା ତୋ ରୀତି
ଆଜି ସେ ରୀତି ଲଙ୍ଘି କିପାଁ ସୌମିତ୍ରି
ଗଲୁ ଶମନପୁରେ ନ ମଲି ମୁହିଁ
ଆଗେ ମୋ ଯିବା ରୀତି ରହିଲା କାହିଁ ?

ଝରିଲେ ନୟନୁଁ ମୋ ଲୋତକଧାର
ପୋଛିବ ଆହା ତାହା ଆଉ କା କର
ମରୁ ସମ ନୀରସ ଜୀବନ ଘେନି
କାହି କାଟିବ କେତେ ଦିନ ଯାମିନୀ ।

---

୪ । ପୁଂସ—ପୁରୁଷ ।

୬ । ବୋଧିବ—ସାନ୍ତ୍ୱନା ଦେବ; ପାବକ—ନିଆଁ ।

ଜାଳ ତୋ ଶିତା ଝାସିବି ସେ ଅନଳେ
ଅଭିଳାଷବିଜ ମୋ ମିଶୁ ଭୂତଳେ,
ନରକ ସହନୀୟ ଥିଲେ ତୁ ପାଶେ
ନ ଲୁଚିବ ସରଗ ତୋ ବିନୁଁ ଲେଶେ ।

୧୯୩୯



—୪୩—

## ମୋ ସୁଖ ବସନ୍ତ

ହେ ସୁନ୍ଦରି ! ଯେତେଦିନ ଅଧରେ ତୁମ୍ଭର
ଅଭାଜନ ପାଇଁ ଥିବ ସ୍ମିତ, ସୁଧା ଧର,
ପ୍ରଫୁଲ୍ଲ ଗୋଲାପ ସମ ଗଣ୍ଡ ଅନୁପମ
ହେଉଥିବ ପୁଲକିତ ଭାଷା ଶୁଣି ମମ,
ଅତଡ଼ା ଖସିଲା ସବୁ ଚିତ୍ତର ଭିତରୁ
ଚଳନେ ମୋ କରୁଥିବ ବୋଧ ଅଙ୍ଗୀ ଭୀରୁ !

---

୭ । ଶମନ ପୁର—ଯମପୁର ।



ଅଭାଜନ—ଅଯୋଗ୍ୟ, ପ୍ରଫୁଲ୍ଲ—ଫୁଟନ୍ତା, ଗଣ୍ଡ—ଗାଲ;
ପୁଲକିତ—ରୋମାଞ୍ଚିତ, ଚଳନେ ମୋ—ମୋ କଥା ଭାବି, ଲପନ ମୁକୁର-

ଜୀବନ ମୁକୁରରେ ବିମ୍ବି ଭାବ ନବ ନବ
ଘଟାଉଣ ଥିବ ମୋର ନେତ୍ର ମହୋତ୍ସବ,
ସନ୍ତୁଭାଗ୍ୟେ କର ମୋରେ ଅଧିକାରୀ ପୁଣି
ବଜାଇ ବାଜେଣୀ ବୀଣା ଝଙ୍କୁଥିବ ବାଣୀ,
ତେବେ ତେବେ ଦିନ ଯାଉଥିବ ମୋ ସୁଖ ବସନ୍ତ
ହୋଇ ନାହିଁ ହୋଇ ନାହିଁ ହୋଇ ନାହିଁ ଅନ୍ତ ! !

୧୯୪୪



—୫୪—

# କବି କଳହଂସ ଗୋପାଳକୃଷ୍ଣ

( ତାଙ୍କର "ଶ୍ୟାମ ଅପବାଦ ମୋତେ ଲଗିଥାଉ"—ବୃତ୍ତରେ )

ବରକବି ! ଅହେ ତୁମ୍ଭ ପଦାବଳି
ସୁକୁମାର ସଜ ଶେଫାଳୀରୁ ବଳି । ଘୋଷା ।
ଭାଗ୍ୟ ଅଜ ବଡ ଉତ୍କଳର ପୂଜିତ ଦେବତା ଅନ୍ତରର
ରାଜିଛ ବାହାରେ ବହିଣ ମୁଦ୍ୟୁ ।
ପଦ୍ମରେ କରୁଛୁଁ ନଉଞ୍ଜଳି । ୧ ।

---

ମୁହଁ ରୂପ ଦର୍ପଣ, ବିମ୍ବି—ପ୍ରତିଫଳିତ କରି, ବଜାଇ ବାଜେଣୀ ବୀଣା—ବାଜୁଥିବା ବୀଣା ସମାନେ, ଅନ୍ତ—ଶେଷ ।



ଶ୍ରୀ ରାମଚନ୍ଦ୍ର ଭବନରେ ଗୋପାଳକୃଷ୍ଣଙ୍କ ମୂର୍ତ୍ତି ପ୍ରତିଷ୍ଠାପିତ ହେବା ଉପଲକ୍ଷେ ରଚିତ

୦ । ଶେଫାଳୀ—ଶଙ୍ଗ ଶିଉଳୀ ଫୁଲ ।
୧ । ନଉଞ୍ଜଳି—ବନ୍ଦନା ।

'କି ନାମ ବୋଇଲୁ' ଅଦ ଭରି ପ୍ରଶ୍ନ ପୁଚ୍ଛୁବାରେ ଶ୍ରୀକିଶୋରୀ ।
ଲଳିତା ଉତ୍ତର ଦେବାରେ ଲୁଚିଛୁ
ଯେ ରସ କି ଅଛୁ ତାହା ଭଲି ? । ୨ ।

'ବାଟ ଛାଡ଼ ଦେ ରେ' କହି ଅଳି ରାଧା ସମ୍ବୋଧିବା ବନମାଳୀ
ଗୀତେ ଫୁଟିଛୁ ଯେ ରସ-ଅରବିନ୍ଦ
କା ମାନସ ତହିଁ ନୁହେ ଅଳି ? । ୩ ।

ଗୋଷ୍ଠଚନ୍ଦ୍ରମାଙ୍କୁ ଅନୁଧ୍ୟାୟି ରାଧା ଭାବେ ନୀତ୍ୟ ଅବଗାହି
"ଦୟା ନକରନ୍ତୁ ଦାସୀ ସିନା" ବୋଲି
ଛଣା ପୀୟୂଷ ତ ଅଛି ଢାଳି । ୪ ।

ଥିବେ ଯେତେ କାଳ ରବିଶଶୀ ଛଡ଼ାଇବା ପାଇଁ ପାପମସୀ
ଗୀତାବଳି ତୁମ୍ଭ ଗୋପାଳକୃଷ୍ଣ ହେ !
କରିବେ ଉଜ୍ଜଳୀ ଗଳାମାଳି । ୫ ।

୧୯୪୨



---

୨ । "କି ନାମ ବୋଇଲୁ" ଗୋପାଳକୃଷ୍ଣଙ୍କ ବିଖ୍ୟାତ ଗୀତ ।

୩ । "ବାଟ ଛାଡ ଦେ ମୁଁ ଯିବି ଫୁଲ ତୋଳି"—ଏହା ମଧ୍ୟ ତାଙ୍କର ଅନ୍ୟତମ ବିଖ୍ୟାତ ଗୀତ ।

୪ । ଗୋଷ୍ଠ ଚନ୍ଦ୍ରମା—ଶ୍ରୀକୃଷ୍ଣ; ଏ ପଦଟି ଗୋପାଳକୃଷ୍ଣଙ୍କର ଅତୀବପ୍ରିୟ; ଅନୁଧ୍ୟାୟି—ଚିନ୍ତା କରି ।



—*—

# ଶୁଭଚକ୍ଷୁ

ଯୁବା ଯୁବତୀ ମନ ମିଶିବା ପାଇଁ
ଶୁଭଚକ୍ଷୁ ମଦନ ଅଛୁ ଭିଆଇ ।

ଅତର୍କେ ଘଟୁଁ ନେଏ ନେଏ ମିଳନ
ଘଟଇ ପ୍ରାଣେ ପ୍ରାଣ-ଅବଗାହନ ।

ତହୁଁ ହୁଏ ମାଦକ ସୁଖ ସଞ୍ଜାତ
ଭାଗୀ ଯହିଁରେ ଭୋଗୀ ଯୁଗଳ ଚିତ୍ତ ।

ବିଚ୍ଛେଦ-ଦୁଃଖ-ଫଳ ସେ ସୁଖତରୁ
କରୁଣା କର ଧାତଃ !,କେବେଁ ନ ଧରୁ ।

୧୯୩୦



ଶୁଭଚକ୍ଷୁ—ସ୍ତ୍ରୀ ଓ ପୁରୁଷଙ୍କ ଚକ୍ଷୁରକ୍ଷ ବା ନେତ୍ର ମିଳନ; ମଦନ—ପ୍ରୀତି ଦେବତା; ଅତର୍କେ—ଅତର୍କିତ ଭାବରେ; ଘଟଇ—ଅବଗାହନ—ଜଣଙ୍କ ପ୍ରାଣ ଅନ୍ୟ ଜଣଙ୍କ ପ୍ରାଣରେ ଗାଧୁଏ; ମାଦକ—ଉନ୍ମାଦକ—ମନକୁ ମତୁଆଳ କରୁଥିବା; ଭୋଗୀ—ଅନୁଭବୀ ।



—୫୬—

# ଆଉ ବିମନା ନୁହ

ରାଗ—ରକ୍ତ କେଦାର; ତାଳ—ଝୁଲା ।

( ସଙ୍ଗିନିରେ ! ମୋତେ ହେଲଣି ଜଣା—ବୁଝରେ )

ଭାରତ ଗୋ ! ଅଉ ବିମନା ନୁହ
କୁହାଅ ଏ ମହୀରେ ସଂଗୀତ ସୁଅ । ଘୋଷା ।
କୀରତୀ-ଭୂଷା, ଶୋକେ ବିବଶା,
ଶୋକ କାଳିମା ତାର ଚିତ୍ତରୁ ଧୁଅ । ୧ ।
କରୁଣା ଭୂଣା, ଅଉ କରନା,
ଢାଳିଛି ଅଭାଗିନୀ ଅମାପ ଲୁହ । ୨ ।
ହଂସ ବାହନୀ, ମା ବାଣୀ ରାଣୀ,
ନିଅଣା ନିଶିଥିନୀ ବେଗେ ପୁହାଅ । ୩ ।
ବାଇ ବିପଞ୍ଚୀ, ମୂର୍ଚ୍ଛନା ରଚି,
ଖସିଥିବା ମୁକୁଟ ମୁଣ୍ଡେ ତା ଥୁଅ । ୪ ।
କୋଟି ମାନସ-ତୃଷା ମା ! ତୋଷ
ଫେଇ ଦେଇ କରୁଣା ରସର କୁଅ । ୫ ।

୧୯୩୬



• । ବିମନା—ବିମୁଖ ।

୧ । କୀରତି ଭୂଷା—କୀର୍ତ୍ତି ଯାହାର ଭୂଷା ବା ଅଳଙ୍କାର; ବିବଶା—ଜଡ଼ୀଭୂତା ।

୨ । ଅମାପ—ଅକଳନ୍ତ ପରିମାଣର ।

୩ । ନିଶୀଥିନୀ—ରାତି ।



—୫୭—

# ନେତ୍ର ସଙ୍ଖାଳି ! କରିଛୁରେ ଦାନ

( ଗୋପୀଭାଷା ବୃତ୍ତରେ )

ସଂ—ପୁଟକ ତରଙ୍ଗା ଶଶିହାସୀ ।
ପ—ଦ୍ମଆନନା ଲହ୍ଲଲ ବୟସୀ ! । ୧ ।
ଦେ—ବତାର ବରେ ଅରେ ବାନ୍ଧବ !
ବି—ମ୍ବାଧରେ ତୋ ମୋ ପ୍ରଭୁ ପଦବୀ । ୨ ।
ପ—ଦେ ଅଲତା ନାଇଲେ ଶୋଭଙ୍ଗି !
ଦେ—ଉ କହିଁଟେ ଦମ୍ଭ ତୁ ମୋ ଭଙ୍ଗି । ୩ ।
ଅ—ତ ମନୋଜ୍ଞ ତୋ ଘନ-କବରୀ ।
ବା—ନ୍ଧି ରଖୁ ତୁ ତହିଁ ଚିତ୍ତ ମୋର । ୪ ।
ବି—ଷାଇଣି ତୁ ଡେରଛ ଚାହାଣି
ଛେ—ଦୁ ଧଇର୍ଯ୍ୟ ତହିଁ ରମାମଣି ! । ୫ ।
ଦେ—ବ ଉପମା ତୋ ସାଥେ କାହାରେ
ମ—ତ ମୋହନା ! ନ ମଇଟେ ମୋଟେରେ । ୬ ।

---

୧ । ସମ୍ପୁଟକ—ଫରୁଆ; ଲହ୍ଲଲ ବୟସୀ—ନବ ଯଉବନା ।
୨ । ବିମ୍ବାଧର—ପାଚିଲା କଇଁଆ କାକୁଡ଼ି ପରି ଲାଲ ଓଠ; ପ୍ରଭୁ ପଦବୀ—ଅଧିକାର ।
୩ । ଶୋଭଙ୍ଗୀ—ସୁନ୍ଦରୀ ।
୪ । ମନୋଜ୍ଞ—ସୁନ୍ଦର; ଘନ—ଗହଳିଆ; କବରୀ—ସଜ୍ଜିତ ମୁଣ୍ଡବାଳ ।
୫ । ବିଷାଇଣ—ବିଷରେ ଗୋଳି; ଡେରଛ—ବାଙ୍କ ।

ର—ସବନ୍ତ ରେ ! ଶୋଭ୍ର ଅଛୁ ବହୁ
ନେ—ସ୍ ଝଳ ଯା ନ ପାରଇ ସହୁ । ୭ ।
ତୁ—ଯେ ଘନ ମୁଁ ବାନ୍ଧବ ! ଗୃତକ
ମୋ—ହ ସରଜବାକୁ ତୁ ମାଦକ । ୮ ।
ହ—ୟ-ଅମିୟ ଓଠକୁମ୍ଭେ ବହୁ
ର—ସ ବରଷି ମନ ମୋର ମୋହୁ । ୯ ।
ମୁଁ—ତୋ ପୀରତ-ଭିକକୁ ଭିକାସ୍ତି
ତୋ—ହ ଚିତ୍ତ-କୁରଙ୍ଗକୁ ଶିକାସ୍ତି । ୧୦ ।
ହ—ସି ଦେଲେ ତୁ ଛନ୍ଦେ ଅନାଇଁ
ର—ଖି ପାରଇ ନାହିଁ ଧୃତ, ମୁହିଁ । ୧୧ ।
ର—ସାଣିରେ ତୁ ଅଳକା ସୁନ୍ଦର !
ଖି—ଣ ଉଦର ! ରେ ରମ୍ଭା-ଗଉର । ୧୨ ।
ଥି—ର ବିଜୁଳି ସମାନ ହୋଇବୁ
ଲୁ—ଲଇଣ ମୁଖ ମନ ମୋହୁବୁ । ୧୩ ।
ମ—ନବୋଧ କର ବାରେ ଲୋକନ
ନେ—ବ ସଙ୍ଗାଳି ! କରବୁ ରେ ଦାନ । ୧୪ ।

୧୯୪୫



---

୭ । ଝଳ—ତେଜ ।
୮ । ମାଦକ—ନିଶା ଜିନସ ।
୯ । ଅମିୟ—ଅମୃତ ।
୧୧ । ଧୃତ—ଧୈର୍ଯ୍ୟ ।
୧୨ । ରସା—ପୃଥିବୀ; ଅଳକା—ମୁଣ୍ଡ ଅଳଙ୍କାର ।
୧୪ । ଲୋକନ—ଦୃଷ୍ଟି ।



—୬—

# ଭକ୍ତକବି ମଧୁସୂଦନ ରାଓ

( ସଗ—ରସ କୁଲ୍ୟା )

ଉତ୍କଳ-ଭାରତୀ-ପୂଜା-ବଳାସୀ
ଭକ୍ତ ବ୍ରହ୍ମନଷ୍ଠ ଗୃହସ୍ଥ ଋଷି
ଯାଇଅଛ ତେଜ ଉତ୍କଳ ଧରା
"କୋଟିଏ ସନ୍ତାନ" ଦେଖ ସେ ପରା
"ଗୋଟିଏ ମନୁଷ୍ୟ" ବନା ଯେ
ଅଶେଷ ବଭବେ ହୋଇ ଗରବଣୀ
ସତ୍ୟ ସତ୍ୟ ଅଜ ଦୀନା ଯେ । ୧ ।
ଜୀବନ ସ୍ରୋତରେ ସ୍ୱଚ୍ଛ ସଲଳ
ନ ବହନ୍ତେ ତାହା କେବେଡ଼ ପଂକଳ ॥
ଅଜ ଏ ଉତ୍କଳେ; ନିଦବେ ରହ
ଦେଖୁଥିବ ନେତ୍ରୁଁ ଅଶ୍ରୁ ଗଡ଼ାଇ
ଆଉ କେ ତୁମ୍ଭ ସମାନ ହେ
କୁମ୍ଭ-ସୁତୋପମ ପଙ୍କିଳତା ହର
ହେବ କି ମଧୁସୂଦନ ହେ ? । ୨ ।

---

୧ । ଉତ୍କଳ ଭାରତୀ ପୂଜା ବଳାସୀ—ଉତ୍କଳ ସାହତ୍ୟର ପୂଜକ; "କୋଟିଏ ସନ୍ତାନ"—"କୋଟିଏ ସନ୍ତାନ ମା ଗୋ ! ଧରଅଛୁ କୋଳେ । ଗୋଟିଏ 'ମନୁଷ୍ୟ କନ୍ତୁ ନ ଦେଖିଲୁ ତୋଳେ"—ମଧୁସୂଦନଙ୍କ ଏ ଉକ୍ତର ଭାବ ଏଠାରେ ଗୃହୀତ ହୋଇଛି ଏବଂ ମଧୁସୂଦନଙ୍କୁହିଁ ସେହ "ଗୋଟିଏ ମନୁଷ୍ୟ" ରୂପେ ଜ୍ଞାନ କରାଯାଉଛି ।

୨ । କୁମ୍ଭସୁତ—ଅଗସ୍ତ୍ୟ; ଶରତ୍କାଳରେ ଅଗସ୍ତ୍ୟ ଉଇଁଲେ ନଦୀ ଆଦର ପଙ୍କିଳତା ଦୂର ହୁଏ ।

ପରଶ ପଟସ୍ପ ଅଙ୍ଗ କଏ ସେ
ତୁମ୍ଭ ପରି ଜନମିଣ ଏ ଦେଶେ
ଅଭୀଭୂତ ନେତ୍ରେ ଦେଇ ଅଞ୍ଜନ
"ମରଣକୁ ଅମୃତର ସୋପାନ"
ବୋଲି କରିବ ଘୋଷଣା ହେ ?
କା ବ୍ରହ୍ମ ସଂଗୀତ ଓଁକାର ଝଙ୍କାର
ଆଣିଦେବ ଉନ୍ମାଦନା ହେ ? । ୩ ।

ଗତ ତୁମ୍ଭେ କିନ୍ତୁ ବାଣୀ ତୁମ୍ଭର
ଯିବାର ତ ନୁହେ ଅଟେ ଅମର !
ମଳୟ ସମାନ ଶାନ୍ତି ଦାୟିନୀ
ମନ୍ଦାକିନୀ ସମ ପାପହାରିଣୀ
ତୁମ୍ଭର କବିତାବଳୀ ହେ
ସଦ୍ଭାବର ଅନ୍ତେ ଦୀନ ଉପାୟନ
ଅଶ୍ରୁ ଅର୍ଘ୍ୟ ଦେଉଁ ଚାଲ ହେ † । ୪ ।

୧୯୩୭



---

୩ । ପରଶ—ପରଶ୍ରେଷ୍ଠ ।

୪ । ଅମର—ଜୀବ ।

† ଉତ୍କଳ ସାହିତ୍ୟ ସମାଜ କର୍ତ୍ତୃକ ଅନୁଷ୍ଠିତ କବିଙ୍କ ବାର୍ଷିକ ଶ୍ରାଦ୍ଧ ଉତ୍ସବମାନଙ୍କରେ ବହୁବାରଗାନ ହୋଇଛି ।



—୫୯—

# ଭାରତୀ ବନ୍ଦନା

( ଚମ୍ପୂ ଓ ଗୀତ ବୃତ୍ତରେ )

ସାଜି ଅଭିନବ ମାଧବ ବିଭବ ତବ ଆଗମନ ପାଇଁ
ପୂଜା ରତ୍ନ-ଥାଳ ବରଣର ମାଳ ଧରି ଏ ଉତ୍କଳ ଭୂଇଁ
ମା ଭାରତି !
କରୁଅଛୁ ଆବାହନ
ବିପଞ୍ଚୀ ! ଧାରିଣି-ଜଡ଼ତାହାରିଣି ଅସ ହିଦରୁଁ ବହନ ।
କବି କଞ୍ଜବନ ଭଞ୍ଜନିକେତନ ମଞ୍ଜୁଳା ଉତ୍କଳ ମଧ୍ୟ
ତୁମ୍ଭରି କରୁଣା ହେବାରୁ ଗୋ ତୃଣା ଗଲୁ ବଥା ହୃଦେ ବନ୍ଧ
ମା ଭାରତି !
ସ୍ମରି ଅତୀତର ଅଣି
ବିଷାଦରେ ଦୁଃଖୀ ହୋଇ ନତମୁଖୀ ଗଡ଼ାଏ ନୟନୁଁ ପାଣି ।
ଦୀନା ପୂଜାରୁଣୀ ନୟନର ପାଣି ଶୁଖାଅ ବଲ୍ଲକୀ ଘୋଷି
ସ୍ପନ୍ଦନ ନବୀନ ଲଭୁ ତା ଜୀବନ ଯାଉ ମନ୍ଦାକିନୀ ବହି
ମା ଭାରତି !
ହୃଦୟ ମରୁରେ ତାରି ।
ଶ୍ୱ-ସାରସ୍ୱତ-ସମାଜରେ ଧନୀ ଥିବୁ ସମ୍ମାନର ହାରି ।
ଣାୟୀ 'ନୂତନ' ମୁରଲୀ ମୋହନ ବାଜୁ କୁଞ୍ଜେ ଉତ୍କଳର
ାନ୍ତ 'ପୁରାତନ' ମନ୍ତ୍ରୁ ତା ବହନ ଦେଇ ତା ଋଦ୍ଧି ସମ୍ଭାର
ମା ଭାରତି !
ନବଯୁଗ ଶଙ୍ଖ ବାଜୁ
୧୯୩୭ ନବ ସାରସ୍ୱତ ଗଉରବ ଟୀକା କଳିଙ୍ଗ ଲଲାଟେ ରାଜୁ ।

---

୧ । ମାଧବ—[ ମଧୁ+ଅ ] ବସନ୍ତଋତୁ ସମ୍ବନ୍ଧୀୟ; ଅଣି—ଟେକ ।
୨ । ବଲ୍ଲକୀ—ବୀଣା; ଋଦ୍ଧି—ସମ୍ପଦ ।



—୬୦—

# ପ୍ରିୟତମା କୋଇଲି

( କେଶବ କୋଇଲି ବୃତ୍ତ )

କୋଇଲି ! କହିବୁ ପ୍ରିୟତମାକୁ ମୋର ।
କେତକୀ-ଶୋଭ ତା ଗନ୍ଧ ମନ୍ତୁରି ମୋ ଉର ଲୋ କୋଇଲି ! ।୧।
କୋଇଲି ! ଖସୁ ଥାଇ ମଧୁ ତା ଅଧରୁ ।
ଖସି ସେ ପଳାଏ ମୁଁ ତା ହାତ ଧରୁ ଧରୁ ଲୋ କୋଇଲି ! । ୨ ।
କୋଇଲି ! ଗରୁ ନିତମ୍ବକୁ ସରୁ କଟୀ ।
ଗମନ ଅଳସ ଯେନି ଯାଏ ସେହୁ ହଟି ଲୋ କୋଇଲି ! । ୩ ।
କୋଇଲି ! ଘନ କେଶେ ବଳେ ଖଞ୍ଜେଁ ଫୁଲ ।
ଘଟଣ ଉରେ ତା ଚିଏ ଅଙ୍କେଁ ମୁଁ ଅତୁଳ ଲୋ କୋଇଲି ! ।୪।
କୋଇଲି ! ଉରୁବଶୀ ରୂପେ ତା ହାରଇ ।
ଉରେ ଅଭଳାଇ ତା ମୁଁ ନିତ ନିରେଖଇ ଲୋ କୋଇଲି ! । ୫ ।
କୋଇଲି ! ଚନ୍ଦ୍ରରୁ ଚପୁଡ଼ି କାନ୍ତି ବନ୍ଧ ।
ଚାରୁ ଅଙ୍ଗୀ ଅଙ୍ଗେ ରଙ୍ଗେ ଅଛି ପରା ନିନ୍ଦ ଲୋ କୋଇଲି ! ।୬।

---

୧ । କେତକୀ ଶୋଭ—କେତକୀ ଫୁଲରେ ସୁନ୍ଦର ଦିଶୁଥିବା; ଉର—ଛାତି ।
୩ । ଯେନି—ଯୋଗୁଁ ; ଯାଏ ସେହୁ ହଟି—ସେ ହାରିଯାଏ ।
୪ । ଘଟଣ—ସୁନ୍ଦର ।
୫ । ଉରୁବଶୀ—ସ୍ୱର୍ଗ ଅପ୍ସରା ଉର୍ବଶୀ ।
୬ । ଚାରୁଅଙ୍ଗୀ—ସୁନ୍ଦରଦେହା; ଅଛି ନିନ୍ଦ—ଉଦ ଅଛି ।

ଚୋଇଲା ! ଛବିଲ-ମୂରତି ତାର ଦେଖି ।
ଗୁଣ୍ଡିବାକୁ ମନ୍ତିବ ଟି କହ କାହା ଆଖି ଲୋ କୋଇଲି ! । ୭ ।

କୋଇଲି ! ଜନ୍ମଥିଲେ ବଜ୍ରଳର ବତୀ ।
ଜ୍ଞବାଧର-କାନ୍ତି ଦେଖି ମଉଳେ ତା ଜ୍ୟୋତି ଲୋ କୋଇଲି ! ।୮।

କୋଇଲି ! ଝୁମ୍ପିକା ତା କାନେ ଦୋହଲଇ ।
ଝଟକ ଗାଲରେ ପଡ଼ି ଛବି ଉକୁଟଇ ଲୋ କୋଇଲି । ୯ ।

କୋଇଲି ! ନତମୁଖୀ ଚିବୁକ-ମୁକୁରେ ।
ନୟନେ ଦଶଇ ମୁଖ ଚୁମ୍ବିଲ କାଳରେ ଲୋ କୋଇଲି ! ।୧୦।

କୋଇଲି ! ଟଭ୍ରି ଫାଳ ସବୁ ଖୋସା ରଚି ।
ଟହ ଟହ ରଙ୍ଗାଧରୀ ଖେଳଇ ମୋ ପୁରୀ ଲୋ କୋଇଲି ! ।୧୧।

କୋଇଲି ! ଠାଠିକ ସୁନ୍ଦର ମୁହଁ ତାର ।
ଠିକେ କବିଜନ-ମନ-ଅତୁଳ-ଆହାର ଲୋ କୋଇଲି ! ।୧୨।

କୋଇଲି ! ଡୋଳେ ତାର ମୂରତି ଦେଖିଲେ ।
ଡକାଇତ ବନନ୍ତ ଇନ୍ଦ୍ରିୟେ ପରି ହେଲେ ଲୋ କୋଇଲି ! ।୧୩।

---

୭ । ଛବିଲ—ସୁନ୍ଦର ।
୯ । ଝଟକ—ଉଜ୍ଜ୍ୱଳ; ଉକୁଟଇ—ଫୁଟି ଉଠେ ।
୧୦ । ମୁକୁର—ଦର୍ପଣ ।
୧୧ । ଟହଟହ ରଙ୍ଗାଧରୀ—ଯାହାର ଅଧର ଖବ୍ ଲାଲ ।
୧୨ । ଠାଠିକ—ନିଖୁଣ; କବିଜନମନ ଅତୁଳ ଆହାର—କବି ତା ମୁହଁକୁ ଗୁହଁଲେ କବିର ପେଟ ପୂରିଯାଏ ।
୧୩ । ଡକାଇତ···ହେଲେ—ତା ରୂପ ଦେଖିଲେ ଆଖି ପ୍ରଭୃତି ଇନ୍ଦ୍ରିୟ-ମାନେ ଡକାଇତ ହୋଇ ତା ରୂପ କାଢ଼ିବାକୁ ବସନ୍ତି ।

କୋଇଲି ! ତାଳ ନେତ୍ର ଗ୍ରହିଲେ ସୁନ୍ଦରୀ ।
ଚଳଯାଏ ଇଷିତରେ ଧୈର୍ଯ୍ୟ ଝଞ୍ଜା ବାର ଲୋ କୋଇଲି ! ।୧୪।

କୋଇଲି ! ନୂଆ ଶିଖା ତା ପୀରତି ପାଠ ।
ନୁହଇ ପ୍ରବୀଣା, ସ୍ଥଳ ନ ଜାଣଇ ବାଟ ଲୋ କୋଇଲି ! ।୧୫।

କୋଇଲି ! ତରୁମୂଳେ ଘନେ ଉପବନେ ।
ତରଙ୍ଗେ ଲୁଚିଲି ଅଙ୍ଗ ତାର ମୁଁ ଗୋପନେ ଲୋ କୋଇଲି ! ।୧୬।

କୋଇଲି । ଥର ଇ କନକ-ଅଙ୍ଗ ଚାଲି ।
ଥଙ୍ଗାର ଭୃଷିଲ "କେହୁ ନୁହେ; ବନମାଳୀ" ଲୋ କୋଇଲି !।୧୭।

କୋଇଲି ! ଦଉ ଜଳ୍ପ ସେ ଦନ୍ତୁ ତା ଚିତ୍ତ ।
ଦୀନ ଭକାଗ୍ ଲଭିଲ ବଳ୍ୟ ଟାର ବଉ ଲୋ କୋଇଲି ! ।୧୮।

କୋଇଲି ! ଧୀରମଣି ସେ ଦନ୍ତ ସଂକେତେ ।
ଧୂଳିରେ ସଂଗ୍ରହ ପ୍ରାଣ ଅର୍ପିଣ ଗୁପତେ ଲୋ କୋଇଲି ! ।୧୯।

କୋଇଲି ! ନତ କର ମୁଖ-ତାମରସ ।
ନୂତନା ହୁଅଇ ଛୁନ୍ଦା ହୋଇ ହସ ହସ ଲୋ କୋଇଲି ! ।୨୦।

---

୧୪ । ତାଳ—ବଙ୍କେଇ; ଇଷିତରେ—ଅଲକ୍ଷରେ; ଝଞ୍ଜା—ଗନ୍ଧ ।

୧୫ । ନୂଆ ଶିଖା ତା ପୀରତି ପଠ—ସେ ନୂଆ କରି ପ୍ରୀତି ବାଟରେ ଗୋଡ଼ ଦେଇଅଛି; ପ୍ରବୀଣା—ଅଭିଜ୍ଞ ।

୧୭ । କନକ ଅଙ୍ଗ—ସୁନାବର୍ଣ୍ଣ ଦେହ ।

୧୯ । ଧୂଳିରେ ସଞ୍ଚାର ପ୍ରାଣ—ସେ ଏଡ଼େ ସୁନ୍ଦର ଯେ ଧୂଳିରେ ତା ପାଦ ପଡ଼ିଲେ ଧୂଳି ଜୀବନ୍ୟାସ ପାଇଯାଏ ।

୨୦ । ତାମରସ—ପଦ୍ମ; ନୂତନା—ନୂଆ ବୟସୀ ।

ଭୋଗିଲି ପଲକେ ମୁଁ ଜରେ ଅଭଙ୍ଗାର ।
ପିପାସୀ ସମାନେ ଓଠୁଁ ହୁଏ ରସଗ୍ରାହୀ ଲୋ କୋଇଲି ! । ୨୧ ।
କୋଇଲି ! ଫୁଲ ବସନ୍ତିତ ତା ଉବଶ୍ରୀ ।
ଫଳାଏ ତପସ୍ୟା-ତରୁ ନାସିକାର ମୋର ଲୋ କୋଇଲି ! । ୨୨ ।
କୋଇଲି ! ବନୋଇ ହୁଅଇ ବାଉ ତହୁଁ ।
ବହୁଳ-ଗନ୍ଧ-ବଇବେ ଭାଗୀ ହେବା ପାଇଁ ଲୋ କୋଇଲି ! । ୨୩ ।
କୋଇଲି ! ଭରମାଙ୍ଗୀ ନତଦେହା ମୋର ।
ଭୀତ ବରଜ ମୋ କଣ୍ଠେ ଲତାଏ ତା କର ଲୋ କୋଇଲି ! । ୨୪ ।
କୋଇଲି ! ମଧୁର ଏ ମହୋତ୍ସବ ବୁଝୁଁ ।
ମୁଗ୍ଧେ ଦେଖନ୍ତି ତାରକା ଫେଇ ନେଣ ସ୍ୱରୁ ଲୋ କୋଇଲି ! । ୨୫ ।
କୋଇଲି ! ଯୂଥିକାର ଗନ୍ଧେ ଉପବନ ।
ଯୋଗାଜଣ ଥାଏ ମଧୁ ତା ଅଭିବାଦନ ଲୋ କୋଇଲି ! । ୨୬ ।

---

୨୧ । ପଲକେ—ଗୁହୁଁ ଗୁହୁଁ; ପିପାସୀ—ଶୋଷୀ ଲୋକ; ଓଠୁଁ ହୁଏ ରସଗ୍ରାହୀ—ଚୁମ୍ବନ ଦେଇ ଅମୃତ ପିଏଁ ।

୨୨ । ଉବଶ୍ରୀ—ଗର୍ଭ; ଫଳାଏ ତପସ୍ୟା ତରୁ···ମୋର—ମୋ ନାକର ତପସ୍ୟାକୁ ସାର୍ଥ କରେ ଅର୍ଥାତ ସୁବାସ ଦ୍ୱାରା ମୋ ନାକକୁ ମୋହିତ କରେ ।

୨୩ । ବନୋଇ ହୁଅଇ—ନଇଁ କର ଅନୁରୋଧ କରେ; ବହୁଳ ଗନ୍ଧ ବଇବେ ଭାଗୀ ହେବା ପାଇଁ—ଅର୍ଥାତ୍ ତା ଗର୍ଭରୁ ବାହାରୁଥିବା ସୁଗନ୍ଧକୁ ଭାଗ ନେବାକୁ ।

୨୪ । ଭରମାଙ୍ଗୀ—ଭର୍ମ ଅର୍ଥାତ୍ ସୁନାପରି ଗୋରା ଦେହ ଯାହାର; ଲତାଏ—ଲତାପରି ବେଢ଼ାଏ ।

୨୫ । ମୁଗ୍ଧେ—ମୋହିତ ହୋଇ; ଫେଇ—ମେଲ୍ଲ କରି ।

୨୬ । ଯୂଥିକା—ଯୂଇ ଫୁଲ ।

କୋଇଲି ! ରୁଚିରାଙ୍କୁ କହିବୁ ବୁଝାଇ ।
ରୁଚିର ତା ବାନ୍ଧୁ ବଶ ନାହିଁ କିଛି ବଧୂ ଲୋ କୋଇଲି ! । ୨୭ ।
କୋଇଲି ! ଲୀଳାରେ ତା ଗ୍ରୀବା ଢାଳିବାର ।
ଲଳିତେ ଦେଖିବା ଓଠେ ମୋ ଚୁମ୍ବନବାର ଲୋ କୋଇଲି ! ।୨୮।
କୋଇଲି ! ବକୁଳ ପାଦପତଳେ ବସି ।
ନିବନ୍ଧ ହୋଇଣ ଅନ୍ୟୋନ୍ୟରେ ଥିବା ରସି ଲୋ କୋଇଲି ! ।୨୯।
କୋଇଲି ! ଶମ୍ପା ଅଙ୍ଗେ ଶ୍ରମ କରି ଦୂର ।
ଶିଥିଳତା-ହୀନ ବାହୁବନ୍ଧେ ରଖିବାର ଲୋ କୋଇଲି ! । ୩୦ ।
କୋଇଲି ! ଷଣଅଙ୍ଗୀ ଫିଟାଇଣ ଗର୍ଭ ।
ଷୋଡଶୀ ତାର ଗୁମ୍ଫିତ ନବେ ପରିଜିବା ଲୋ କୋଇଲି ! । ୩୧ ।
କୋଇଲି ! ସଜଳ କଜ୍ଜଳ ଅକ୍ଷି ତୋଳି ।
ସରସିଜମୁଖୀ ଉପରେ ପଡ଼ିବାର ଢଳି ଲୋ କୋଇଲି ! । ୩୨ ।

---

୨୭ । ରୁଚିର — ସୁନ୍ଦର ।
୨୮ । ଲୀଳାରେ — ଖେଳରେ; ଗ୍ରୀବା — ବେକ; ଢାଳିବାର — ବଙ୍କେଇବା; ଲଳିତେ — ମଧୁର ଓ ଧୀର ଭାବରେ; ଚୁମ୍ବନବାର — ଚୁମ୍ବନ ସବୁ ।
୨୯ । ବକୁଳ ପାଦପ — ବଉଳ ଗଛ; ନିବନ୍ଧ ହୋଇ — ବାଧା ହୀନ ଭାବରେ ।
୩୦ । ଶମ୍ପା ଅଙ୍ଗେ — ବିଜୁଳି ପରି ଝଟକ କରନ୍ତ ଦେହରେ; ଶିଥିଳତା ହୀନ ବାହୁବନ୍ଧ — ଟାଣ ଅଲିଙ୍ଗନ ।
୩୧ । ଷଣ ଅଙ୍ଗୀ — ଷଣ ଫୁଲପରି ଗୋରି ଦେହ ଥିବା ସ୍ତ୍ରୀ; ତାର ଗୁମ୍ଫିତ ନବେ ପରିଜିବା — ତା ଗର୍ଭରେ ଫୁଲ ମଞ୍ଜଣି ହୋଇଥାଏ । ସେ ତାହାଦ୍ୱାରା ତାର ମଞ୍ଜଣି ହୋଇଥିବା ଅକାଶକୁ ପରିଜିତ କରେ, ଅର୍ଥାତ ତହିଁକୁ ତା ଗର୍ଭ ଅଦ୍ଭୁତ ସୁନ୍ଦର ଦିଶେ ।
୩୨ । ସଜଳ — ଲୁହଭରା; ସରସିଜ ମୁଖୀ — ପଦ୍ମମୁଖୀ ।

କୋଇଲି ! ହୋଇଅଛୁ ଜପାମାଳି ମୋର ।
ହରପ୍ରିୟା ମନାଇଁ ମୁଁ ଲଭିବି ତା କର ଲୋ କୋଇଲି ! ।୩୩।
କୋଇଲି ! କ୍ଷିତି-ଶିର-ଅଳକା ମୋ ବାଳା ।
ଖେଦ ନାଶେଁ ବନ୍ଧୁ ଉରେ ତା ଚୁମ୍ବନମାଳା ଲୋ କୋଇଲି ! ।୩୪।

୧୯୪୫



---

୩୩ । ଜପାମାଳି — ସବୁବେଳେ ସ୍ମରଣ କରିବାର ଜିନସ; ହରପ୍ରିୟା — ପାର୍ବତୀ; ମନାଇଁ — ତୋଷ କରି, ଲଭିବି ତା କର — ତାକୁ ବିଭା ହେବି ।

୩୪ । କ୍ଷିତିଶିରେ — ପୃଥିବୀର ମୁଣ୍ଡରେ; ଅଳକା — ମୁଣ୍ଡର ଅଳଙ୍କାର ବିଶେଷ, ଖେଦ — ଦୁଃଖ; ଉରେ — ଛାତିରେ ( ଏଠାରେ ସ୍ମୃତିରେ )



# ସେ ତ ସ୍ୱଦେଶ ମୋହର

( ରାଗ ଶଙ୍କରାଭରଣ )

ପ୍ରକୃତିର ଶୋଭା ଯାର ଜଗତେ ଅତୁଳ
ସ୍ୱର୍ଗସୁଖୁଁ ବଳି ସୁଖ ଦିଏ ଯାହା କୋଳ
ସେ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର । ୧ ।

ରତ୍ନାକର ପଦ ଯାର ଧୁଏ ଅବିରତ
ହିମାଳୟ ମୁକୁଟେ ଯା ଶିର ସୁଶୋଭିତ
ସେ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର । ୨ ।

କ୍ଷୀର ସମ ନୀର ବହି ନଦୀରେ ଯେ ଭୂଇଁ
ଜନନୀ ସମାନ ସୁତ ସୁତାଙ୍କୁ ପାଳଇ
ସେ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର । ୩ ।

---

୧ । ଅତୁଳ—ଉପମାହୀନ ।
୨ । ରତ୍ନାକର—ସମୁଦ୍ର; ଅବିରତ—ନିରନ୍ତର; ସର୍ବଦା ।

ସୁମଧୁର ଫଳ ଧରି ଯାର ତରୁଗଣ
ପୋଷୁଛନ୍ତି ଚିରକାଳ ଜୀବ ଅଗଣନ
ସେ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର ।୪।

ସୁଗନ୍ଧି ସୁମନ ଯାର ଫୁଟି ଦିବା ରାତି
ଭୂତଳରେ ତାରମାଳ ପରାଏ ଶୋହନ୍ତି
ସେ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର ।୫।

ଜଳ, ବନ, ଗିରି ଯାର ଶ୍ୟାମଳ ସୁନ୍ଦର
ମଧୁ ଖାଇ ଫୁଲେ ଯାର ଘୂମାଏ ଭ୍ରମର
ସେ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର ।୬।

ବସୁଧାର ଗନ୍ତାଘର ଯାହା ଧନେ ଧନୀ
ଧର୍ମର ଆଲୁଅ ଦେଲେ ଜଗତେ ଯା ଜ୍ଞାନୀ
ସେ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର ।୭।

---

୪। ଅଗଣନ—ଅସୁମାର ।
୫। ସୁମନ—ଫୁଲ ।
୬। ଶ୍ୟାମଳ—ଶାଗୁଆ ।
୭। ଗନ୍ତାଘର—ଭଣ୍ଡାର; ଜ୍ଞାନୀ—ବେଦଉପନିଷଦକାର ଋଷି ପ୍ରଭୃତି ।

ନରଦେହ ଧରି ଯାର କେତେ ସୁତସୁତା
ତପସ୍ୟ ବଳରେ ହେଲେ ସାକ୍ଷାତ ଦେବତା
ଏ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର । ୮ ।

ତହିଁରେ ଜନମ ଲଭି ଧନ୍ୟ ମୋ ଜୀବନ
ସ୍ୱଦେଶର ମାଟି ମୋତେ ପୂଜାର ଚନ୍ଦନ
ଯଜ୍ଞ ବିଭୂତି ତା ଧୂଳି
ମଣ୍ଡୁଥାଉ ଚିରକାଳ ତାହା ମୋ ମଉଳି । ୯ ।

୧୯୩୯

—୭୨—

## ବ୍ରଜକିଶୋର ପାଖକୁ ସ୍ନେହଲତା

(ରାଗ ଚ ଭଙ୍ଗି )

କେଉଁ ଆଶାରେ ଆଶାୟୀ          ହୋଇ ଦିନ ଯାପିବଇଁ
ତୁମ୍ଭେ ତ ଆସିଲ ନାହିଁ ବ୍ରଜକିଶୋର !
ନୀରସ, ସୁଷମାହୀନ          ହେଲା ମୋ ରଜନୀ ଦିନ
ଯୁଗ ସମ ହେଲା କ୍ଷଣ କାଳ ଅସର
କହ ସତେ ଆସିବ ନାହିଁ
ଅଭାଗିନୀ ସ୍ନେହଲତା-କୁଞ୍ଜ-କହ୍ନାଇଁ ? ।୧।

୯ । ମଉଳି—ମୁଣ୍ଡ ।

୧ । ସୁଷମାହୀନ—ଅସୁନ୍ଦର; କୁଞ୍ଜ-କହ୍ନାଇଁ—ପ୍ରେମିକ ।

ଜନକ ବିଭବ ବିଷ ନି ଦିଏ ତା ମୋରେ ସନ୍ତୋଷ
ଚିତ୍ତେ ଜଳେ ହାହୁତାଶ ପ୍ରାଣ-ଦୋସର !
ତୁଚ୍ଛ ଶୂନ୍ୟ ମହାଶୂନ୍ୟ ଦିଶନ୍ତି ଏ ଦିଶମାନ
ଆଖି ରଖିବାକୁ ଥାନ ନାହିଁ ଯେ ମୋର !
ଆଖିର ଯା ସମସ୍ତ ସାର
ଲଳିତ ମୂରତି ତୁମ୍ଭ ତହିଁର ଘର । ୨ ।

ଜନକ କରନ୍ତି ଚିନ୍ତା ମୁଁ ହୋଇବି ପରିଣୀତା
ତୁମ୍ଭେ ଜାଳି ଦେଲ ଚିତା ଆଗ ଅନ୍ତରେ,
ଏ ପୋଡ଼ା ହୃଦୟ ନେଇ କାହାକୁ ମୁଁ ସଁପିବଇଁ
ପାରିବି ବା ପଶିବାଇ କେଉଁ ମଣ୍ଡରେ ?
ମନ୍ଦୁରିଆ ! ହୋଇଲ ଦୂର
ଚିତ୍ତକୋଷୁଁ ମଧୁ ମୋର କରିଣ ଜୁରି । ୩ ।

ଗୋପାଳଜୀ ମନ୍ଦିରରେ ସନ୍ଧ୍ୟା ଆଳତି କାଳରେ
ମିଳାଇ ନେତ୍ର ନେତ୍ରରେ କିଣିଲ ମନ,
ଯୁବା ଜନଙ୍କ ଗୋଚର ମହିମା ଚତୁରାକ୍ଷର
ଅନ୍ତରେ ଯୋଡ଼ି ଅନ୍ତର ତା ତତକ୍ଷଣ
ପଣ୍ଡିତେ ଅପରିଚିତେ
ପରେ ଆପଣାର କରିଲ ତା କହିଁତେ । ୪ ।

---

୨ । ଜନକବିଭବ—ବାପଙ୍କ ସମ୍ପତ୍ତି; ହାହୁତାଶ—ହାହାକାରରୂପ ନିଆଁ; ପ୍ରାଣଦୋସର—ଜୀବନବନ୍ଧୁ; ଦିଶମାନ—ଦିଗମାନ; ଲଳିତ—ସୁନ୍ଦର ।

୩ । ପରିଣୀତା—ବିବାହିତା; ଜୁରି—ଲୁଟି ।

୪ । ଚତୁରାକ୍ଷ—ଶୁଭଚକ୍ଷୁର ମିଳନ ।

ହୋଇ ତୁମ୍ଭେ ସାତ ପର ହେଲ ଅତି ଆପଣାର
ହୋଇଲ ଦେବ ମନ୍ଦର ଦେବତାର ଭୂଇଁ,
ଅଭାଗିନୀ ଭାବେ ମଙ୍କି ରୂପ ଗରବ ବରଜି
ମନେ ତା ଦମ୍ଭ ସରଜି ପଡ଼ିଲ ନଇଁ
ନଇଁ ବାରେ ଜଣିଲି ଚିତ୍ତ
ଜେତା ହୋଇ କଲ ଜୁର ଚିତ୍ତର ବିତ୍ତ । ୫ ।

ଲୋତକେ ସୁମନ ଧୋଇ ମାଳା ମୁଁ ନିତି ରଚଇ
ଏକେ ଦେବ ଅରଚଇ ତୁମ୍ଭଙ୍କୁ ଅନେ
ତୁମ୍ଭର ଦତ୍ତ ସୁମନ କୁନ୍ତଳେ କରେଁ ମଣ୍ଡନ
ଯା ଦେଖି ହୁଅ ମଗନ ମୋର ଧିଆନେ
ଗରବେ ମୋ ଭର ଅନ୍ତର
କୋମଳେ ଶୁଣାଅ 'ତୁ ମୋହର ମୁଁ ତୋର' । ୬ ।

ଜନକଙ୍କ ପରଚିତ ହୋଇଣ ହେଲ ଆଗତ
ଅହେ ମୋ ଚିତ୍ତ ବିଯତ ସଂପୂର୍ଣ୍ଣ ଶଶୀ !
ଅପରିଚିତର ସର ପାଶେ ମୋ ଥାଅ ବିଚର
ନ ପାରନ୍ତି କେହ୍ନେ ଧରି ନେଇ ବଡ଼ଶୀ
ପକାଇ ଯା ଷଣକୁ ଷଣ,
କଉଶଳେ ଧରୁ ଥାଅ ମୋ ଚିତ୍ତ ମୀନ । ୭ ।

---

୬ । କୁନ୍ତଳ—କେଶ ।
୭ । ବିଯତ—ଆକାଶ; ସମ୍ପୂର୍ଣ୍ଣଶଶୀ--ପୂର୍ଣ୍ଣଚନ୍ଦ୍ରମା; ବଡ଼ଶୀ—ବନଶିକଣ୍ଟା; ମୀନ—ମାଛ ।

ସିନେମାକୁ ଯେଉଁ ଦିନ କରଇ ମୁହିଁ ଟେନ
କାଣିଲଠ ପର ମନ ହୁଅ ଅଗତ
ଲଭିଲେ ଆସନ ପାଶେ ନାମନ୍ତି ଯାଅ ଉଲ୍ଲାସେ
କଉଣଠେ କଥା ରଟସ ରହୁଁ ନାରତ
ଗଭିରେ ମୋ ଦଅ ସୁମନ
କୁଣ୍ଠେ ମୋଠ ଦଅ କର ମୋର ଏ ମନ । ୮ ।

ସଙ୍ଗେ ଧେନା ପରବାର ବାପା ଯାନ୍ତେ ବାଲେଶ୍ୱର
ତୁମ୍ଭେ ହେ ଛଇଲବର ! ଖାଲି ଛଳରେ
ପ୍ରଣିତ ତାହାଙ୍କୁ ବହୁ ମୋ ନେବେ ନେବ ମିଳାଇ
ପ୍ରେମ ଚକ୍ରୀ ରୁପ ବହୁ ବସି ରେଳରେ
କରିଥିଲ ସଙ୍ଗେ ଗମନ
ହୃଦ ହାଣି ହୁଏ କର ତା ସୁମରଣ । ୯ ।

ପଥେ ମୋର ବସୁଣକା, ଜନନୀ ପାରିଲେ ଡକା
ତୁମ୍ଭେ ସମ୍ଭାଳିଲ ଏକା ଏଡ଼େ ବିପତ୍ତି
ମରଣ ସାଗରେ ବୁଡ଼ି ଯାଇଥାନ୍ତ କାହୁଁ ନଭି
ଟଳାଇ ରଖିଲ ଭୁବ ଜୀବନ-ବତି
ଜନନୀଙ୍କ ସେନେହ ମୋର
ହୋଇ ଅସୁଥିଲ ଗାଢ଼ୁଁ ଯେ ଗାଢ଼ତର ।୧୦।

---

୯ । ଛଳରେ—ବାହାନାରେ; ପ୍ରେମଚକ୍ରୀ—ଗୁପ୍ତପ୍ରେମିକ ।
୧୦ । ଭୁବ—ସଂସାରରେ ।

ବିଦାୟ ନେବାର ଦିନ          ନାହିଁ କି ବନ୍ଧୁ ! ସ୍ମରଣ
ଗଲେ ଗଲା ନିବେଦିଣ କହିଲ ମୋରେ
"ସ୍ନେହ ରେ ! ତୋହର ମୁହିଁ          ଆନର କେବେହେଁ ନୁହଇ
ତୋ ଗୁଣ ମୁଁ ଥିବ ଧ୍ୟାଇ ଦୂରେ ଅଦୂରେ
ଅନ୍ତରେ ତୋ ଠାବ ମୋ ପାଇଁ
ରଖିଥିବୁ ମାଗୁଛି ରେ ଚନ୍ଦ୍ରମାମୁହିଁ !" ।୧୧।

ଭଣିଲି ମୁଁ "ଯେବେ ଯାଅ          ଶଙ୍ଖ ମୋ ଫେରାଇ ଦିଅ
ନତୁବା କାହିଁ ନ ଯାଅ ଚିତ୍ତ ମୋ ନେଇ
ବନ୍ଧୁ ହେ ! ଯାଅ ପରତେ          ବିଚ୍ଛେଦ ଦାଢ଼ କରତେ
କରତ ହେବ ନିରତେ ଭାବ ଚିତୋଇ;
ଫୁଲ ହାର ଅନଲେ ଫିଙ୍ଗ
ପାଷାଣେ କଚୁଡ଼ି କାଚ ପ୍ରତିମା ଭାଙ୍ଗ "।୧୨।

ଭଣିଲ "ସୁମନାବର !          ନୋହିବ ବେଶୀ ଉତ୍ତର
ଯିବଇଁ ଅଳପ ଦୂର ଅଥୟ ନୁହ,
ନ ପାରଇ କହି କଥା          ଘୂରି ଯାଉଛି ମୋ ମଥା
ଅସହ ବିଦାୟ ବଥା, କଣ୍ଠରେ କୋହ
ଜମି ଯାଉଅଛି ମୋ ଧନ !
ନେଉଛି ଦେହ ମାତର, ରଖ ତୁ ମନ"।୧୩।

---

୧୨। ଚିତୋଇ—ଭାବ ଭାବ।

ସୋଦରେ ବସଗ ବନ୍ଧୁ ସମରେ ନାମ ଲେଖାଇ
ଅହା ଭଳି ନ ପାରଇ ହେଲି ଟି କ୍ଷସ !!
କ୍ଷଣେ ହୋଇବ ଡାହ କାହାକୁ ଦୋଷିବ ନାହିଁ
କରମେ ବଲ୍ ମୋ ନାହିଁ ଜୀବଜୀବେଶ !
କୁମାରୀ ମୁଁ ରହିବ ବୀର !
ପୋଛିଲ ଯାଏଁ ତୁମ୍ଭେ ମୋ ନୟନୁଁ ନୀର । ୧୪ ।

ହୁଅନ୍ତି ମୁଁ ଜଳଧର ଗଗନେ କରି ସଂଚର
ଯାଆନ୍ତି ସେ ଦେଶ ଦୂର, ରହନ୍ତି ଯହିଁ !
ବିହଙ୍ଗ ହେଲେ ହୁଅନ୍ତି ବସୁଧ ଲଙ୍ଘି ଗମନ୍ତି
ଅନ୍ତର ଦାହ ଶମନ୍ତି ମୁଁ ଯେ ଅନାଇଁ ।
ହୁଅନ୍ତି ମୁଁ ହେଲେ ଅନିଳ
ଅଲିଙ୍ଗି ଅସନ୍ତି ଚୁମ୍ବି ଅଙ୍ଗ ଅତୁଳ !। ୧୫ ।

ସ୍ୱପନଦେବୀ ସଦୟ ହେଲେ ହୋଇ ମୁଁ ଉଦୟ
ଗଦ ଗଦ ମାନମୟ ଭାଷା ବଖାଣି
ବଲ୍ଲଭୀ ଅମୂଲ୍ୟ ଧନ ବଲ୍ଲଭ ସୁଣ୍ଠୁ ବଚନ
ହେଲେ କରି ଅବଗନ ଧରନ୍ତି ପାଣି
ଏଡ଼େ ଭାଗ୍ୟ ମୋର ଟି କାହିଁ ?
କାଙ୍ଗାଳୁଣୀ ରାଜରାଣୀ ଭୋଗ ବାଞ୍ଛିଲ । ୧୬ ।

---

୧୪ । ଡାହହେବ—ସିଝିଯିବ ।
୧୫ । ଜଳଧର—ମେଘ; ଅନ୍ତରଦାହ—ମନପୋଡ଼; ଶମନ୍ତି—ଶୀତଳ କରନ୍ତି ।
୧୬ । ବଲ୍ଲଭ—ପ୍ରେମିକ; ବଲ୍ଲଭୀ—ପ୍ରେମିକା ।

ଢଳାଇ ପ୍ରେମ-ଝାଗର    ରହୁବଇଁ ଉଜାଗର
ଲଭିବ ଫଳ ଯାଗର ତୁମ୍ଭଙ୍କୁ ଦେଖି
ଆଶା ମୋ କବଚ ହୋଇ    କରୁ ରକ୍ଷା ତୁମ୍ଭ ଦେହ
ଶାନ୍ତ ବେଗେ ହେଉ ମନ୍ତ୍ରୀ, ଯୁଦ୍ଧ ଉପେକ୍ଷି
ଅସ ସେହୁ ବାହୁ ବନ୍ଧନେ
ନ ପୋଡୁଁ ସେନେହ-ଲତା ଶୋକଇନ୍ଧନେ ।୧୭।

୧୯୪୫



--୬୩--

## ନନ୍ଦକିଶୋର ବଳ

( ରାଗ ରସକୁଲ୍ୟା )

ହେ ଦିବଗତ ନନ୍ଦକିଶୋର !
ନିପୁଣ ତୂଳିକା ଧରି କରର
ଉତ୍କଳର ଜନପଦ ଆଲେଖ୍ୟ
ଅଙ୍କି ଗଲ ଯାହା କସ ତା ଲକ୍ଷ୍ୟ ହେ
ତୁମ୍ଭ ଲେଖନୀ ପ୍ରସାଦେ ହେ
ସାରସ୍ୱତ ଧାମେ    ଚିରାବହେଳିତା
ପଲ୍ଲୀ ଅଜ ରାଜେ ମୋଦେ ହେ । ୧ ।

---

୧୭ । ଯାଗର—ଯଜ୍ଞଗୋଷ୍ଠୀଙ୍କର; ଇନ୍ଧନ—ଜାଳେଣି କାଠ ।

୧ । ଦିବଗତ—ସ୍ୱର୍ଗତ; ଜନପଦ—ପଲ୍ଲୀ, ଅଲେଖ୍ୟ—ଚିତ୍ର; ପ୍ରସାଦେ—ଅନୁଗ୍ରହରୁ; ସାରସ୍ୱତଧାମେ—ସାହିତ୍ୟକ୍ଷେତ୍ରରେ ।

ନାଗର ସଭ୍ୟତା ଉପକରଣ
ଘେରିଅଛି ଆଜ ସଭ୍ୟଜୀବନ
ପଲ୍ଲୀ ପ୍ରକୃତିର ନିସର୍ଗ ଶୋଭା
ନୋହୁଛି ଶିକ୍ଷିତ ମାନସଲୋଭା
ତୁମ୍ଭେ କିନ୍ତୁ ବର କବି ହେ
ଶିକ୍ଷିତ ନୟନ ଆଗରେ ନାଣିଛ
ଟାଣି ଅନବଦ୍ୟ ଛବି ହେ । ୨ ।

ଓଢ଼ଣା ଉଢ଼ାଳେ ଦିବ୍ୟ ମାଧୁରୀ
ବାନ୍ଧ ରଖିଥିବା ଲୁଚାଇ କରି
କାଢ଼ିପୋଇ ତାଙ୍କ କାନ୍ତିବାରତା
ପଢ଼ୁଥିବାରେ ସେ ପୀରତିକଥା
ତାହା ଆଜ ତୁମ୍ଭ ପର ହେ
କିଏ ଦେଖି ପୁଣି ଦେଖାଇ ପାଇଛି
ଧନ୍ୟ ଦିବ୍ୟ ନେତ୍ରଧାରୀ ହେ !! ୩ ।

ଶିଶୁ ଖେଳ ମେଳ, ଜନନୀ ପ୍ରାଣ,
ସରଳ ଅବଳା-ବଧୂ ଜୀବନ
ବେପାରର ଗୋଳ ଶିଶୁଦରୋଟି
ଲେଖନୀରେ ତୁମ୍ଭ କ ଯୋଗେ ଫୁଟି
ଥିଲା ଟି ନନ୍ଦକିଶୋର ହେ,
ପଢ଼ିଲେ କବିତା ପଲ୍ଲୀ ମନୋରମା
ଗାଇ ଆସି ଆଗର ହେ । ୪ ।

---

୨ । ନାଗର—ସହରରେ ଗଠିତ; ଉପକରଣ—ସରଞ୍ଜାମ; ନିସର୍ଗ—ସ୍ୱାଭାବିକ; ଅନବଦ୍ୟ—ନିଖୁଣ ।
୪ । ସରଳ—ସିଧା; ମନୋରମା—ଶୋଭାମୟୀ, ମନୋହାରିଣୀ ।

ଧନ୍ୟ ଯାଦୁକର ! ନିଦାଘେ ବସି
କବିତାରେ ତୁମ୍ଭମନ ନିବେଶି,
ଗାଇଲେ ଲାଗଇ ସତେ ବରଷା,
ଅସିଲାଣି ମାଡ଼ି ବୁଡ଼ାଇ ରସା ହେ
ଧାଇଁଲାଣି ପୁଣି ଜଳ ହେ
ଝାଞ୍ଜି ଅଉ ନାହିଁ ଶୁଭିଲାଣି ଏହୁ
ମେଘ ଉପର ଉପର ହେ । ୫ ।

କି ଦେଇ ପୂଜିବୁଁ ତୁମ୍ଭ ପ୍ରତିଭା
କି ଟୀକା ଦେଇଣ ଲଲାଟ ଅଭା
ମଣ୍ଡିବୁଁ ହେ କବି ! ଦିଅ ବତାଇ,
ପଲ୍ଲୀ ଉପବନେ ସୁମନ ପାଇଁ
ଯାଇ ନାହୁଁ ଅଭାଜନେ ହେ
ଦେନ ଯାହା ଅଛୁ ଦୀନ ଉପାୟନ
ଅଜି ସାରସ୍ୱତ ଧାମେ ହେ । ୬ ।

୧୯୩୨

---

୫ । ଯାଦୁକର—ଐନ୍ଦ୍ରଜାଲିକ; ନିଦାଘେ—ଗ୍ରୀଷ୍ମକାଳରେ; ରସା—ପୃଥିବୀ ।

୬ । ଅଭାଜନେ—ଅଯୋଗ୍ୟ ବ୍ୟକ୍ତିମାନେ; ଉପାୟନ—ଭେଟି; ସାରସ୍ୱତଧାମେ—ଉତ୍କଳ ସାହିତ୍ୟ ସମାଜ ଘର ଶ୍ରୀରାମଚନ୍ଦ୍ର ଭବନରେ । ବହୁ ଦିନ ତଳେ କବିଙ୍କ ପ୍ରତିକୃତି ଉନ୍ମୋଚନ ଉପଲକ୍ଷେ ଏ ଗୀତ ରଚିତ ହୋଇଥିଲା ।

—୨୪—

# ବାଣୀ ରାଣୀ

[ ବିଷ ପୀୟୂଷ ବୋଲି ମୁଁ ଦେଲି ରୁଖି—ବୃନ୍ଦରେ ]

ବାଜ ଉଠିବ ବିପଞ୍ଚୀ ସତେ ପୁଣି
ଅଗୋ ! ବାଣୀରାଣି ! । ଘୋଷା ।

କଳା-ଲୀଳା-ଦୋଳା ଏହୁ ମଗ୍ନ
କାଳ-ଦାବ-ଜ୍ୱାଳ ସହୁ ସହୁ
ପରଶ ନୀରସ ଅନ୍ତର ଉଦାସ
ସଙ୍ଗୀତେ ମାନସ ଆଉ ନାହିଁ । ୧ ।

ଥିଲା ଯେବେ ପ୍ରାଣ-ପ୍ରଚୁରତା
କଣ୍ଠେ ନ ଫୁଟିଲା କି ଗୀତ ତା
ଜୀବନ-ସରସୀ ଅମ୍ବୁ-ରାଶି ନାଶି
ଦୁଃଖରବ କଲା କି ଅହନ୍ତା । ୨ ।

୦ । ବିପଞ୍ଚୀ—ବୀଣା ।

୧ । ଜାଳ—ସମୂହ, ସବୁ; ମାନସ—ମନ ।

୨ । ପ୍ରାଣପ୍ରଚୁରତା—ଉତ୍ସାହ, ତେଜ ଓ ବୀର୍ଯ୍ୟ ପ୍ରଭୃତି ପ୍ରାଣ ପରିପୁଷ୍ଟକ ଗୁଣର ଆଧିକ୍ୟ; ସରସୀ—ପୋଖରୀ; ଅମ୍ବୁ—ପାଣି ରାଶି—ସମୂହ ।

ଭଞ୍ଜ-କବି ରବି-ବନମାଳୀ
ଗୋପାଳକୃଷ୍ଣ ସଂଗୀତାବଳୀ
ଯେ ଦେଶ ସଂପଦ ଦେଖ ତା ବିପଦ
ସେ ପୁଣି ବହଇ ଭିକ୍ଷାଥାଳି । ୩ ।

ଯିବ ଜାତର ଏ ଅପମାନ
ଫେରିବ ଉତ୍କଳୀ ଘରଧନ
ବିଶ୍ୱ ସାରସ୍ୱତ ସଙ୍ଗୀତ ଭବନୁଁ
କରବ ସେ ସାର ଅହରଣ । ୪ ।

ଏହୁ ମାନସିକେ କରୁଁ ପୂଜା
ବନ୍ଦନା ଘେନ ବଲ୍ଲକୀଭୁଜା !
କଳାପୁଞ୍ଜ-ପୀଠ ପୂଜକ ଓଡ଼ିଆଁ,
ସଙ୍ଗୀତେ ପ୍ରାଣ ତା ହେଉ ତାଜା । ୫ ।

୧୯୩୭

---

୩ । ଭଞ୍ଜ—ଉପେନ୍ଦ୍ର ଭଞ୍ଜ; କବିରବି—କବିସୂର୍ଯ୍ୟ ବଳଦେବ; ବନମାଳୀ—ସଙ୍ଗୀତକାର ବନମାଳୀ ପଟ୍ଟନାୟକ; ଗୋପାଳକୃଷ୍ଣ—କବିକଳହଂସ ଗୋପାଳକୃଷ୍ଣ ପଟ୍ଟନାୟକ ।

୫ । ମାନସିକେ—ଏହି କାମନା କରି; ବଲ୍ଲକୀଭୁଜା—ବୀଣାପାଣି; ତାଜା—ପ୍ରଫୁଲ୍ଲ ।



—୨୫—

# ହେମଲତାର ଚିଠି

( ଗୀତ—ଶଙ୍କରାଭରଣ )

ବିନୋଦ ବାବୁ ହେ !
ତୁମ୍ଭ ପାଇଛୁ ପତର
ବିଳମ୍ବ ହୋଇଛୁ ଦେବା ପାଇଁ କି ଉତ୍ତର
ବୋଲି ଅଛଇ ପୀଡ଼ିତ
ଫୁରୁସତ ନାହିଁ ଭଲେ କହୁଛୁ ମୁଁ ସତ । ୧ ।

ବଡ଼ଲୋକ ଝିଅ ଜଣ ଶିଖିଛା ଅବର'
ତମ କାମେ ହେବା ପାଇଁ ସହାୟ ତମର
ନୋହୁବଇଁ ମୁଁ ଭାଜନ
ଭାଳୁଛୁ ଏହାହିଁ ତୁମ୍ଭ ଚିଠିର ମରମ । ୨ ।

ବୁଲାଇ ଲେଖିଛ ତୁମ୍ଭେ ଗରବର ପୁଅ
ଭସି ଯାଅ ଠାଣେ ଯେଣେ ଘିଣ୍ଟିନାର ସୁଅ
ମୁହିଁ ଗଗନର ଶଶୀ
କରିବାକୁ ଆଶା ମୋରେ ନ ପାର ଭରସି । ୩ ।

ମାମୁଁ ଘରେ ଥିଲ ଅସି ପ୍ରଚୁର-କାମରେ
ବଡ଼ କଷ୍ଟ ନ୍ତରେ ଅଗୁଁ ଥିଲ ମୁହିଁ ଘରେ
ସୁନ୍ଦା ପାଇଁ ତୁମେ ଅର୍ଥ
ବୋଉକୁ ମୋ କଲ ବନ୍ଧି ! ଲେଖାରେ ମାଉସୀ । ୪

୨ । ଭାଜନ—ଯୋଗ୍ୟ ।
୪ । ଲେଖାରେ—ଦୂରସମ୍ପର୍କୀୟା ଭାବରେ ।

ମୁଁ ଥିଲି ଅପରିଚିତା; ବୋଉ କହିବାରେ
ଶତେହି ଟଙ୍କା ଗୁନ୍ଦା ଗଣିଦେଲି ତୁମ୍ଭ କରେ
ତୁମ୍ଭ ସେ ବେଳ ଗୁହାଣୀ
ଜଣାଇଲା ହେଲେ ତୁମ୍ଭ ଅନ୍ତର କାହାଣୀ । ୫ ।

ଦିନେକ ଖୁଦୁରୁକୁଣୀ ଥିବ ତୁମ୍ଭ ମନେ
ମୁଁ ଥିଲି ନିରତ ନାନା କୁସୁମ ଚୟନେ
ନ ମିଳନ୍ତେ କଇଁ ଫୁଲ,
ବୋଉ ଆଗେ କରୁଥିଲି ଅଖି ଛଳ ଛଳ । ୬ ।

ଚୋରର ପରି ( କ୍ଷମିବ ଏ ବିଶେଷଣ ) ସଖା !
ଲୁଚି ଦେଖୁଥିଲ ଦୃଶ୍ୟ; ଦେଲ ଆସି ଦେଖା
ଭାଷି "କଇଁ ଫୁଲ ଗୁର
ମିଳିବ ନାହିଁ କି ଏତେ ଭାବନା ହେମର" ।୭।

ଭାଷିଲା ବୋଉ "ବିନୋଦ ! ସେ ଦଳ-ପୋଖରୀ
ମଣିପଖିଆ କାନ୍ଥିରେ ଅଛଇ ରେ ପୂରି
କେହି ନ ପଶନ୍ତି ତହିଁ
ନୋହିଲେ କି ପୂଜା ପାଇଁ ନ ମିଳନ୍ତା କଇଁ ?" ।୮।

କିଛି ନ ଭାଷିଣ ତୁମ୍ଭେ ହୋଇଲ ବାହାର
ଆଣିଲ ଘଣ୍ଟାକ ପରେ କଇଁ ଫୁଲ ଭାର
ନିଜ କାନ୍ଧରେ ବୁହାଇ
ବିପଦ ଗଣିଲ ନାହିଁ କହ କାହା ପାଇଁ ? ।୯।

---

୫ । ଅନ୍ତର କାହାଣୀ--ହୃଦୟର କଥା ଅର୍ଥାତ୍ ପ୍ରେମ ଅଭିଳାଷ ।
୬ । ନିରତା—ନିଯୁକ୍ତା, ଚୟନେ—ତୋଳିବାରେ ।
୯ । ବିପଦ ଗଣିଲ ନାହିଁ—ପ୍ରାଣଭୟକୁ ଖାତିର କଲ ନାହିଁ ।

କୁମାର ପୂର୍ଣ୍ଣିମା ଦିନ ପୂଚି ଖେଳ ସାରି
ଫେରୁଥିଲି ହେଲା ବେଳ ସଙ୍ଗତେ ତୁମ୍ଭର
 ମୋର ଝାଳ-ଭିଜା ଦେହ
ଦେଖି ଭାସିଅଛ ଯାହା ମନରେ ପକାଅ । ୧୦ ।

ପକେଟରେ ଚମ୍ପା ଫୁଲ ଥିଲି ଲୁଚାଇଣ
ଗଭାରେ ତା ଗୁଞ୍ଜି ଦେଇ କଲି ଯେଉଁ ଗୁଣ
 ଅହେ "ଗସ୍ୱବର ପୁଅ" !
ସେ ବେଳ ସାହସ ଏବେ ଗଲା କାହିଁ କହ ।୧୧।

ମନେ ନାହିଁ ଧୋବା ଘରୁ ବ୍ଲାଉସ ମୋହର
ଫେରାଇ ପିନ୍ଧିଲି ନାଳେ କାମିଜ ଉପର
 ମୋତେ ଭାସିଲି ଦେଖାଇ
ମଲୟେ, ଚନ୍ଦ୍ରେ, ଚନ୍ଦନେ ଏତେ ସୁଖ ନାହିଁ ।୧୨।

ହେଲା ମୋ ଠିଅମରଣ ଲାଜେ ଗଲି ଜଳି
ନ କହନ୍ତେ ଭାଷା, ତେବେ ହେଲି ମୋରେ ଚଳି ।
 ଅହେ "ଗସ୍ୱବର ପୁଅ" !
ଲେଖନ୍ତେ ଉଠୁଚି କୋହ ଝରୁଅଛୁ ଲୁହ ।୧୩।

ହୃଦ-ଧନ ହରେ ହେଲେ ପ୍ରେମ ତସ୍କର
ନୁହଇ ଅବସ୍ଥା ତାରେ ଅଲଙ୍ଘ୍ୟ ପ୍ରାଚୀର
 ହୃଦ-ତସ୍କର ମୋର !
ଚନ୍ଦ୍ର ହୋଇ କୁମୁଦକୁ ମଣ କପାଁ ଦୂର ? ।୧୪।

---

୧୨ । ବ୍ଲାଉସ---କାଞ୍ଚୁଲା ।
୪ । ଅଲଂଘ୍ୟପ୍ରାଚୀର---ଯେଉଁ ପାଚେରିକୁ ଡେଇଁପିବା ଅସମ୍ଭବ ।

ଦେଉଛୁ ଶୁଭ ସମ୍ବାଦ ତା ପାଇଁ ବଧେଇ
ଭେଟ ହେଲ ଦିନ ପୁଣ, ମାଗି ମୁଁ ନେବଇଁ
        ବୋଉ ବାପାଙ୍କୁ କହିଇ
"ହେମକୁ ବିନୋଦେ ଦେଲେ ଭଲ ହୁଅନ୍ତା ନାହିଁ ?"।
ବାପା କହୁଛନ୍ତି "ତମ ଦେହ ଭଲ ହେଉ
ହେଲେ ତା ହୋଇବ ଯୁହିଁଥିଲେ ମହାପ୍ରଭୁ
        ବିନୋଦଟି ଅଛି ପିଲ
ସବୁମତେ ଯୋଗା, ହେଲେ ଗରିବ କି ହେଲା ? "।୧୬
ଚିନ୍ତାକର ସହି ପାଇଁ ହେଉଛୁ ତା ଦୂର
ଲେଖିବ ଏଣିକି ଚିଠି ଆନ ପରକାର,
        ଆଉ ଅବସ୍ଥାର କଥା
ପଢେ ଲିହ ମନେ ମୋର ଦେବ ନାହିଁ ବ୍ୟଥା ।୧୭।
ମଲ୍ଲୀ ଫୁଲ ଗୋଟିଏ ମୁଁ ଦେଲି ଏଥି ସହ
ନ କରିବ ସଂଶୟେ ମୋ ଆଉ ଦୁର୍ବିସହ
        ହେମଲତାର ପ୍ରଣତି
ହେମଲତା-ବନ୍ଧୁ ! ଘେନା କରିବ ହୋଇ ତ ।୧୮।

୧୪୪୫



୧୫ । ବଧେଇ—ଶୁଭ ଖବର ଦେଲେ ସମ୍ବାଦଦାତା ଯେଉଁ ପୁରସ୍କାର ପାଏ ।
୧୬ । ଯୋଗା—ଯୋଗ୍ୟ ।
୧୭ । ଲିହ--ଲେଖି ।
୧୮ । ମଲ୍ଲୀଫୁଲ······ଏଥି ସହ—ମଲ୍ଲୀଫୁଲ ଦେଇ "ମୁଁ ତୁମ କରୁଣା ବିନା ମଲି" ଏହା ପ୍ରେମ ସାହିତ୍ୟରେ ସୂଚନା ଦିଆଯାଏ । ଦୁର୍ବିସହ--ଅତି ଅସହ୍ୟ ।



—୭୭—

# ମା ! ତୁ କ୍ଷମାବାରିଧି

ରାଗ ମାଳବ ଗୌଡ଼ା—ଅଠତାଳ

( ଶ୍ୟାମ କମଳାକ୍ଷଙ୍କୁ ସମ ନାହିଁ ଆଉ—ବୃତ୍ତରେ )

ହେ ଜନନୀ ! ଶଯ୍ନ ତ ଭାଙ୍ଗୁ ନାହିଁ
କାଳ-ସରିତ ପର ଯାଉଛୁ ବହି । ଘୋଷା ।

ଖାରବେଳ କୀରତ ଭୁଲିଲେଣି ସନ୍ତତ
ଅଧୋଗତ-ପାଦୁକା ଶିରେ ବହି । ୧ ।

କପିଳେନ୍ଦ୍ର ଅନଙ୍ଗ— ଭୀମ ଶ୍ରୀ ନରସିଂହ
ନାମ ଦେଲଣି କାଳ ପାସୋରାଇ । ୨ ।

ସ୍ୱାଧୀନତା-ବିଭୂତ କୋଳେ ମା ଗୋ ! ସନ୍ତତ—
ସମ ଖେଳାଇଥିଲୁ ଗଳ୍ପ କାହିଁକି ? । ୩ ।

ଅସିଲା କାହୁଁ ଦୁଃଖ ସୁଖ-ଶୀତମୟୂଖ
ଲୁଚିଲା ତମେ ଅପଘନ ଘୋଟି । ୪ ।

ହେଲେ କାହୁଁ ଜନମ କୁଳ ପାଂଶୁଳାଧମ
ସୁତେ ପରପଦ-ଲେହନ-ସ୍ନେହୀ । ୫ ।

---

୦ । ସରିତ—ନଈ ।
୧ । ଅଧୋଗତ ପାଦୁକା—ଅବନତ ରୂପ ଜୋତା ।
୩ । ବିଭୂତ—ସମ୍ପଦ ।
୪ । ଶୀତମୟୂଖ—ଚନ୍ଦ୍ର ; ତମ—ଅନ୍ଧାର; ଅପଘନ—ଦେହ;
୫ । କୁଳପାଂଶୁଳା—କୁଳାଙ୍ଗାର; ଲେହନ ସ୍ନେହୀ—ଚାଟିବା ପାଇଁ ଲାଳସୀ ।

ସଞ୍ଚିତ ପୁଣ୍ୟ ସୁଧା—                    ପାବନାଙ୍ଗୀ ବସୁଧା
ଶସ୍ୟ-ଶ୍ୟାମଳା ଧନ୍ୟହିରଣ୍ମୟୀ ।୬।
ଅବଳେ ଦିଅ ବଳ                    ପ୍ରାଣ-ମନ୍ଦିର ତୋଳ
ସନ୍ତାନର ଦେବତା-ବାସ ପାଇଁ । ୭ ।
ସନ୍ତାନ ଅପରାଧୀ                    ମା ! ତୁ କ୍ଷମା ବାରାଧି
ବାଞ୍ଛନ୍ଦ ମାଗେ ପଦେ ମଥା ନାହିଁ । ୮ ।

୧୯୩୪



—୬୨—

## ତୁ ଏ ବେଶ ହୋଇବୁ ନାହିଁ

ରାଗ—ଲଳିତ କାମୋଦୀ; ଅଠତାଳ
( ବନମାଳୀଙ୍କ "ଶ୍ୟାମନାଗର ହେ ଏ ବେଶ
ହୋଇବ ନାହିଁ"—ବୃତ୍ତରେ )

ପ୍ରାଣ-ବାନ୍ଧବ ରେ ! ତୁ ଏ ବେଶ ହୋଇବୁ ନାହିଁ
ଏ ବେଶ ଦେଖିଲେ ପାଷାଣ ତରଳେ
ମୋ ଧୃତି ରହିବ କାହିଁ ? । ଘୋଷା ।
ସୁକ୍ଷୀନ ବସନ                    କର ପରିହରଣ
ଥିବୁ ଯେବେ ଉଭା ହୋଇ
ମୋ ପ୍ରାଣ ସଙ୍ଗାତ !                    ଅଳସ ଭଙ୍ଗିନେ
ଭୁଜ ଠେକା ଦେବୁ ନାହିଁ । ୧ ।

---

୭ । ଅବଳ—ବଳହୀନ ।
୮ । ବାରାଧି—ସମୁଦ୍ର; ନାହିଁ—ନ୍ୟସ୍ତ କର ।

୦ । ଧୃତି—ଧୈର୍ଯ୍ୟ ।

ତୋ ସ୍ମିତ-ମାଧୁରୀ ମୋ ଦମ୍ଭ-କଟୁରୀ
ମଧ୍ୟେ ପଶି ଦେବୁ ନାହିଁ
ହସିବାର ହେଲେ ଛଇଲାବର ରେ !
ଠେରକ୍ଷେ ନ ଦେବୁ ଚାହିଁ । ୨ ।

ଫୁଲମୃଦୁଳାରେ ! ଫୁଲ ତୁ ଗନ୍ଧରେ
ଯତନେ ମଣ୍ଡିବୁ ନାହିଁ
ମଣ୍ଡିଥିବୁ ଯେବେ ଢାଙ୍କିଲ ବସନ
ମୁଣ୍ଡୁଁ ନ ଦେବୁ ଖସାଇ । ୩ ।

ଅଳକ-ଅବଳି ଖେଳାଇ କପାଳେ
ସିନ୍ଦୂର ଘେନିବୁ ନାହିଁ
ଭୁଲିଥିବୁ ଯେବେ ପୁରତେ ମୋ ବନ୍ଧୁ !
ଅଳକ୍ତ ନ ଥିବୁ ନାଇ । ୪ ।

ଯେତେ ବେଶ ତୋତେ ମନା କଲି ବନ୍ଧୁ !
ତେତେ ବେଶ ହେଲୁ ତୁହି
ହସି ମନେ ମନେ ଦୃଗ୍ଭଙ୍ଗି ବଚନେ
ବେଶ ତୋ ସବୁ ତା ପାଇଁ । ୫ ।

୧୯୩୬



---

୧ । ପନ୍ଧରଣ କର—ପିନ୍ଧି ।

୨ । ସ୍ମିତ—ମୃଦୁକ ହସ; ଛଇଲାବର—ଚତୁରୀ ଶ୍ରେଷ୍ଠ; ଠେରକ୍ଷେ—ବଙ୍କେଇ କର ।

୩ । ଫୁଲମୃଦୁଳା—ଫୁଲ ପରି କୋମଳ ଦେହା ।

୪ । ଅଳକ—ଚୁନ୍ଦୁଚୁନ୍ଦିଆ କେଶ; ପୁରତେ—ଆଗରେ; ଅଳକ୍ତ-ଅଳତା;

୫ । ଭୃଗୁଇ—ସଂକେତ କର ।

—୬୮—

# ଜଡ଼ତା ପାଶ ଗଲେ କାହିଁ କି ହେ ?

ରାଗ—ମାୟାମାଳବ ଗୌଡ଼ା—ତାଳ ଝୁଲା

( ଉଠିଲୁ ଏତେ ବେଗେ କାହିଁକରେ ଦୁଃଖୀଧନ—ବୃନ୍ଦରେ )

ଜଡ଼ତା-ପାଶ ଗଲେ କାହିଁକି ହେ ଦେଶବାସୀ ।
ରକତେ ଉଷ୍ମ ଅଛି ନାହିଁ କି ହେ । ଘୋଷା ।

ଭୁଲିଗଲ ମାନସ ଅତୀତ ଇତିହାସ
ଦୂର ଉପନିବେଶ ଭୁଲିଲ କି ହେ । ୧ ।

ବଣିଜ ଲକ୍ଷ୍ମୀ ଯାଇଁ ପର ହାତେ ସମ୍ଭାଇ
ସେ ଭୂତି ବିନା କାତ ଜୀଇ କି ହେ । ୨ ।

ଉତ୍କଳ—ତମାଳ— ଛବିଳ ସିନ୍ଧୁ-କୂଳ
ହୃଦେ ପାରିଲ ନାହିଁ ଛୁଇଁ କି ହେ । ୩ ।

ସାଧବ-ଦେଶେ ଜାତ ହେବା ହୋଇ ବିସ୍ମୃତ
ଦୀନତା-ଶେଯେ ମର ହାଇ କି ହେ । ୪ ।

ବୀର-ଦେଶେ ଜନମ ଭୀରୁତା-ପଦେ ନମ
ଚମକ ଯହିଁ ନିଜ ଛୁଇ କି ହେ । ୫ ।

ଅବଳାର ପଣତେ ଅଶ୍ରୁ ଲୋତ ଉପରେ
କଳଙ୍କ-ପଙ୍କ ଲୁପ ଏହି କି ହେ । ୬ ।

ବନ୍ଧୁର କାନ୍ଦ କହେ ଶୋକ ଅନଳ-ଦାହେ
ବୁକୁ ପୋଡ଼େ ଯହିଁ ଏ ମହୀକି ହେ । ୭ ।

୧୯୩୪

---

୦ । ଉଷ୍ମ—ଉଷ୍ଣମ ।

୧ । ଉପନିବେଶ—ଓଡ଼ିଶାର ଦରିଆପାରି ସାମ୍ରାଜ୍ୟ ।

୨ । ସମ୍ଭାଇ—ରକ୍ଷିଛି ; ଭୂତି—ସମ୍ପତ୍ତି,

୩ । ଛବିଳ—ସୁନ୍ଦର ।

—୬୯—

# ସୈନିକର ଅନୁଚିନ୍ତା

( ରୁଷିଆ କବିତାର ଛାୟା )

ରାଗ—ରେଖୁ

ରେ କୋକିଳ ! ଯାଅ ଉଡ଼ି    ଯହିଁ ଚିନ୍ତା-ଜଳେ ବୁଡ଼ି
ମୁହିଁ ଉପାଧାନେ ମାଡ଼ି ଢାଳି ଲୋତକ
ରୂପସୀ ପ୍ରେୟସୀ ମୋର    ହୃଦେ ଭରି ହାହାକାର
ବିରହେ ମୋ ଅନିବାର କରଇ ଶୋକ;
ପ୍ରବାସେ ମୋ ହୃଦେ ହୁତାଶ
ଜଳେ ସୁମରି ତା ଗୁଣେ ନିଶି ଦିବସ । ୧ ।

ଜହ୍ନରୁ ତାକୁ କୋମଳେ    ପ୍ରାନ୍ତରେ ଘାସକୁ ଜାଳେ
ଖର ସୁରକରଜାଳେ ଯଥା ନିଦାଘ
ମୋତେ ଜାଳିବାର ପାଇଁ    ପରୁଷ-କେଳିତ ସାଇଁ
ମୋ ତନୁ ତା ଣିରେ ଘ୍ଳଇ କରେ ସେ ବାଗ—
ମିଳନର ବରଷାଜଳ
ପାଇଁ ମୋ ପ୍ରାଣଚାତକ ସଦା ବିକଳ । ୨ ।

---

୧ । ଉପାଧାନେ—ତକିଅରେ; ଅନିବାର—ବନ୍ଦ ନ ହେଉଥିବା; ହୁତାଶ—ନିଆଁ ।

୨ । ଖର—ପ୍ରଚଣ୍ଡ; ସୁରକର—ସୂର୍ଯ୍ୟ କିରଣ; ଜାଳ—ସମୂହ; ପରୁଷ—ନିର୍ଦ୍ଦୟ, କେଳିତସାଇଁ—ମଦନ; ଘ୍ଳଇ—(ଏଠାରେ) ଦେଉଯାଉ ବିନ୍ଧି ।

ନ ଥିବାରୁ ସେ ମୋ ପାଶ ରଜନୀରେ ତାରା-ଈଶ
ସ୍ୱଚ୍ଛ କଉମୁଦୀ-ହାସ ନ ରୁଚେ ମୋରେ
ଦିବସର ଦିବାକର- କର ନ ଦିଶେ ରୁଚିର
ଶୋଭା ଅଧିଦେବୀ ମୋର ଯେଣୁ ଟି ଦୂରେ
ତା ମଧୁର ସମ୍ଭାଷସୁଧା
ବିହୁନେ ନୀରସ ମୋରେ ଲାଗି ବସୁଧା । ୩ ।
କାହା ଉରେ ନଇଁ ଶିର ଭୋଗି ବିଶ୍ରାମ ମଧୁର
କରିବି ରେ ରସଭର ଏ ମୋର ଗୀତ
କାହା ବୀଣା-ଜଣା ଭାଷା କରିବ ସୁଧା ବରଷା
କାହାକୁ କରି ଭରସା ସ୍ମିତର ଭାତ
ଫୁଟିବ ଏ ଓଠେ ମୋହର
କେ ଡାକିବ ତୋଳି ସଙ୍ଗୀତର ଝଙ୍କାର । ୪ ।
ଯାଅ ତୁ କୋକିଳ ଉଡ଼ି ଯହିଁ ଚନ୍ଦ୍ରାଜଳେ ବୁଡ଼ି
ଗବାକ୍ଷ କବାଟ ଫେଡ଼ି ତାଳି ଲୋଚନ
ରୂପସୀ ମୋ ହୃଦରାଣୀ ମୋ ଚିନ୍ତା ମାନସେ ଆଣି
ଗଣ୍ଡେ ତା ନିବେଶି ପାଣି କରଇ ଶୋକ
କୁହୁତାନ ମୋ କାନେ ଢାଳି
ହୃଦ ମୋ ଗାଧୁକବର ! ନ ଦିଅ ଜାଳି । ୫ ।

୧୯୪୪ 

---

୩ । ତାରେଶ—ଚନ୍ଦ୍ର; ସ୍ୱଚ୍ଛ—ଧବଳ, କୌମୁଦୀ—ଚନ୍ଦ୍ରିକା, ଶୋଭା ଅଧିଦେବୀ—ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ, ସମ୍ଭାଷସୁଧା—ଆଳାପ ରୂପ ଅମୃତ ।

୪ । ସ୍ମିତର ଭାତ—ମୃଦୁହାସ ରୂପ ଆଲୁଅ ।

୫ । ଗବାକ୍ଷ—ଝରକା ।

—୬୧—

# ବିଶ୍ୱନାଥ କର

( ରାଗ ରସକୁଲ୍ୟା )

ସାହିତ୍ୟପୁରୋଧା ହେ ବିଶ୍ୱନାଥ !
ଆଜ ଏ ଉତ୍କଳେ ପୁଣି କା ହାତ
ସାହିତ୍ୟଲତାକୁ ରଞ୍ଜା ଯୋଗାଇ
ସମାଜରେ ଅହା ଦେବ ମଡାଇ ହେ
ଗଲ ତନୁ ଦଶହରା ହେ
ମୁହିଁ ଲୁଚ୍ଛ ଦେଇ ରହିଲ ସରଗେ
ଝରାଇ ଅଶ୍ରୁ ଅସରା ହେ । ୧ ।

ବିଶ୍ୱାସର ପୀଠେ ହେବାକୁ ବଳି
ଅସ୍ତୁସାର ତୁମ୍ଭ ତନୁଁ କେ ବଳି
ଥିଲା ଟି ଉତ୍କଳେ ? ହେ କର୍ମବୀର !
ଧନୁଁ ଧନ ଦାନୁଁ ସେ ଦାନବୀର
ବଂକ୍ରଦ୍ୱର ଖମ୍ବମାନ ହେ
ତୁମ୍ଭ ତୁଲ୍ୟ ନରୋ- ତ୍ତମଙ୍କ ପ୍ରୟାଣେ
ଭାଙ୍ଗଇ ଯେଣୁ ପତନ ହେ । ୨ ।

---

୧ । ସାହିତ୍ୟ ପୁରୋଧା—ସାହିତ୍ୟ ବେଦୀର ପୁରୋହିତ ।

୨ । ନରୋତ୍ତମ —ଶ୍ରେଷ୍ଠ ମନୁଷ୍ୟ ।

ରସନାର ଭୂଷା, ଲେଖନୀ ବାଣୀ
ସଙ୍ଗତେ ସେ ଧାମୁଁ ଥିଲ କି ଆଣି
ବଜ୍ରସାର ଯାହା ଧାରଣା ତାର
ଦେବାକୁ ଏ ଦେଶେ ହେ ସୁଧୀବର ?
ତୁମ୍ଭେ ଗଲ ଯେଉଁ ଦିନୁଁ ହେ
ଦେଶର ଗର୍ଜନ କଦାପି ଦେବେ
ଶୁଭଇ ସାହିତ୍ୟ ବନୁଁ ହେ । ୩ ।

ଭକ୍ତିରୂପଧର ଭକ୍ତିଜୀବନ
ଯାଚିବାକୁ ଗୃହେ ଦ୍ୱିଜାସ୍ୟ ଜନ
ଆଉ କିଏ ଅଛୁ କହ ଏ ଦେଶେ
ନାହିଁ ଯଦି ଭଲା କହ କି ଦୋଷେ
ଛାଡ଼ିଗଲ ବିଶ୍ୱନାଥ ହେ ?
ତପୋଧାମେ ତୁମ୍ଭେ କହୁଛୁ ମୁଁ ସତ
'ସାହିତ୍ୟ' ହେଲା ଅନାଥ ହେ । ୪ ।

୧୯୩୨



୩ । ରସନାର ଭୂଷା… …ବାଣୀ—ବିଶ୍ୱନାଥ ଶବ୍ଦଶାଳୀ ବକ୍ତା ଓ ଲେଖକ ଥିଲେ; ବଜ୍ରସାର—ବଜ୍ରପରି ଦୃଢ଼; ସୁଧୀବର—ପଣ୍ଡିତ ଶ୍ରେଷ୍ଠ ।



—୨୦—

# ବିପିନବିହାରୀ ଚଉଧୁରୀ

( ଶ୍ରୀରାଧାବାଡ଼ୁଲୀ ପ୍ରେମ ରତ୍ନ ତୁଳ—ବୃତ୍ତରେ )

ସର୍ଜନକୁଶଳା ପ୍ରକୃତ ହାରିଲା
ହେ ବନ୍ଧୁ ଯାହାର କଳାପାଶେ
ମାହେନ୍ଦ୍ର ଯୋଗରେ ଜନ୍ମ ଜନମିଲ
କୋଣାରକ-ଧନ୍ୟ ସେହୁ ଦେଶେ
ଜନନୀର ପାଇଁ
ଦୁଃଖରେ ତା ସମ-ଦୁଃଖୀ ହୋଇ
ଲାଞ୍ଛନା-ତାମସ-ହରଣ-ମିହିର
ଇଶ୍ୱ ଦେଲ ବହ୍ନି ପଠିଆଇ । ୧ ।

---

୧ । ସର୍ଜନ କୁଶଳା—ସୃଷ୍ଟି କରିବାରେ ପାରଙ୍ଗମା; ଯାହାର—ଅର୍ଥାତ ଉତ୍କଳର କଳାଶିଳ୍ପୀମାନେ ଏତେ ବିବିଧ ଓ ଏତେ କମନୀୟ ସୃଷ୍ଟି କରିଛନ୍ତି ଯେ ତାଙ୍କ ସୃଷ୍ଟି ତୁଳନାରେ ନିଜେ ପ୍ରକୃତି ସୁଦ୍ଧା ପଛରେ ପଡ଼ି ଯାଇଛି; ଲାଞ୍ଛନା—ଅପମାନ; ତାମସ—ଅନ୍ଧାର, ହରଣ—ଦୂର କରୁଥିବା, ମିହିର—ସୂର୍ଯ୍ୟ, ଅର୍ଥାତ ଜନନୀ ଉତ୍କଳର ଅଧୁନାତନ ଯୁଗର ଅପମାନ ଦୂର କରିବା ପାଇଁ ବିଧାତା ତୁମ୍ଭଙ୍କୁ ପଠାଇ ଦେଲେ ।

କୋଟି ଅଧୋଗତ କବଳରେ ପଡ଼ି
ଉତ୍କଳର ଆତ୍ମା ନାହିଁ ମରି
ବିଶ୍ୱକଳାପୀଠେ ପ୍ରମାଣ ତା କରି
ହେ ବରେଣ୍ୟ ସୁଧୀ ! ତୁଳୀଧାରି !
ତୁମ୍ଭ ଗଉରବେ
ତୁମ୍ଭର ବିଜୟ-ଶ୍ରୀବିଭବେ
ଜନନୀ-କପାଳେ ଦୀପ୍ତି ଯୋଗ ହେଲା
ଗରୀୟାନ ହେଲୁଁ ଅମ୍ଭେ ସର୍ବେ । ୨ ।

କୋଣାର୍କ-ମୂକ-ଅବଳା-ମୂରତି
ମୁଖୁଁ ଫୁଟାଇଲ ହୁଳହୁଳି
ପଥର ଅବଳା ପ୍ରାଣବନ୍ତ ହୋଇ
ଧରିଛନ୍ତି ବନ୍ଦାପନା ଥାଳି
ସାରସ୍ୱତଧାମେ
କଳା-କିରୀଟିନୀ ଧରା ନାମେ
ସାର୍ଦ୍ଧକୋଟି ଉତ୍କଳୀୟ ଶ୍ରଦ୍ଧାଞ୍ଜଳି
ଘେନ ଟେକି ଯାହା ଦେଉ ଅମ୍ଭେ । ୩ ।

୧୯୭୫



---

୧ । ଆତ୍ମା—ଅନ୍ତରାତ୍ମା, ଦୀପ୍ତି—ଆଭା,

୩ । ତୁମ୍ଭ ଗୌରବରେ ଉତ୍ଫୁଲ୍ଲ ହୋଇ କୋଣାର୍କର ପଥର ଅବଳା ମୂର୍ତ୍ତିମାନେ ତୁମ୍ଭଙ୍କୁ ଅଭ୍ୟର୍ଥନା କରିବା ପାଇଁ ବନ୍ଦାପନା ଥାଳି ଧରି ହୁଳ ହୁଳି ପକାଉ ଅଛନ୍ତି । କଳାକିରୀଟିନୀ ଧରା—ଉତ୍କଳ ।

—୨୧—

# ସଜଳ କରିବୁ ନାହିଁ କଜ୍ଜଳ ନୟନ

( ରାଗ—ଶଙ୍କରାଭରଣ )

ସଜଳ କରିବୁ ନାହିଁ କଜ୍ଜଳ ନୟନ
ବୋଲି କେତେ ବାର ତୋରେ ଦେଇ ନାହିଁ ରାଣ
ଥିଲେ ଅଶା ମୋହଠାଇଁ
ତୋ ଗଣ୍ଡ-ଗୋଲପେ ଲୁହ ଧୂଅନ୍ତା କିପାଇଁ । ୧ ।

ଯୋଗୀ ମୁଁ ମୋ ଆଳ ସିନା ସ୍ମିତ ତୋର ସହୁ !
ଶୋକ-ମେଘ ସେ କୌମୁଦୀ ପକାଇଲେ ଘୋଇ
ମୋରେ ଏ ସାରା ସଂସାର
ଅମା ରଜନୀର ସମ ଦିଶଇ ଅନ୍ଧାର । ୨ ।

ଯାବତ ଜଞ୍ଜାଳଭାର କାନ୍ଧେ ମୋର ଦିଅ
ପର ବୋଲି ମୁହିଁ ମନୁଁ ପୋଛୁ ଗୋ ଫିଙ୍ଗାଅ
ପର ହେଲି କେଉଁ ପରି
ଚୀରନ୍ତ-ମୂଲରେ ଅଗ୍ନିଁ କିଣା ହୋଇ ସାରି । ୩ ।

ସଂସାର ଉଦ୍ୟାନେ ଫୁଲ୍ଲ ଗୋଲାପ ସୁମନ
ଦେଖିବାରେ ଖାଲି ତୋରେ ଫୁରି ଉଠେ ମନ
ଉପଭୋଗୀ ଭାଗ୍ୟବାନ
ସହିବ କେମନେ ଚିନ୍ତା-କୀଟର ଦଂଶନ ? । ୪ ।

---

୧ । ସଜଳ—ଲୁହରେ ଛଳଛଳ; କଜ୍ଜଳ—କଳା; ଗଣ୍ଡଗୋଲପ—ଗାଲ ରୂପ ଗୋଲାପ ଫୁଲ ।

୨ । ସ୍ମିତ—ମନ୍ଦହାସ, ମୁରୁକି ହସ; ଅମା—ଅମାବସ୍ୟା ।

୪ । ଫୁଲ୍ଲ—ପ୍ରସ୍ଫୁଟିତ ।

ମୋ ଉପରେ ବନ୍ଧୁ ଝଞ୍ଜା, ଭୃଙ୍ଗ ତୁ ମଳୟ,
ମାନସହାରିଣୀ ମମ ଶୋଭାର ନିଳୟ,
ଶୋଭାବିଳାସୀ ମୁଁ କବି
*ଫୁଲର ଭାର ଯା ତୋତେ ମୋରେ ସେହୁ ପବି । ୫ ।

୧୯୩୭



—୨୨—

# ନିତ୍ୟାନନ୍ଦ ପାଖରୁ ନିରୁପମା

ରାଗ—ଚୋଖି

( ଶିଂଶପା ବୃକ୍ଷର ଡାଳେ ହନୂମନେ ମନେ ଭାବେ—ବୃତ୍ତରେ )

ଶୂନ୍ୟ ଦିଶଇ ସଂସାର
ନାହିଁ ଭାଷା ଲେଖିବାର
ଦଇବ ଦଉଡ଼ି ନେବ କି ହେ ଉଡ଼ି
ମୋତେ ଅତଳ ଗହ୍ୱର
ପ୍ରିୟ ମୋହର ହେ । ।୧।

---

୫ । ଫୁଲର ଭାର—ଅର୍ଥାତ ତୋ ଉପରକୁ ଫୁଲ ସମାନ ଭାର ଅଟିଲେ ମୋତେ ତାହା ପବି ଅର୍ଥାତ ବଜ୍ରମାନ ପରି ବୋଧହୁଏ ।

---

୧ । ଲେଖିବାର – ଲେଖିବା ନିମନ୍ତେ; ଦଇବଦଉଡ଼ି – ଭାଗ୍ୟ ( ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣିଲେ ତେଣିକି ଯାଇ )

ବାପ ମୋର ନିଦାରୁଣ
ଦେଲେଣି ଏବେ ବଚନ
ମୁଁ ହେବି କାଞ୍ଚନପୁର-ଜମିଦାର—
ତନୟ ଢୋଲ-ମଣ୍ଡନ ।
ନାହିଁ ମରଣ ହେ ! । ୨ ।

ବୋଉର ମୋ ସ୍ଥିର ନାହିଁ ।
କାନ୍ଦୁଛି ଲୁହ ଗଡ଼ାଇ
ଜମିଦାର ଘର ପେଷୁଛନ୍ତି ସ୍ଥିର
ନାନା ଉପହାର ଦେଇ
ନୁହଇ କହି ହେ ! । ୩ ।

ଠଙ୍କା ପାଞ୍ଚଟି ହଜାର
ଅଣୁଛନ୍ତି ବାପ ମୋର
ଶାଗ ମାଛ ସବୁ ହେବଣି ବଜାର
ଲଲାଟ ପଟେ ମୋ ଗାର
ପ୍ରିୟ ମୋହର ହେ ! । ୪ ।

---

୨ । ନିଦାରୁଣ—ନିର୍ଦ୍ଦୟ; ଢୋଲମଣ୍ଡନ—ଭାର୍ଯ୍ୟା ।
୪ । ଲଲାଟ ପଟେ ମୋ ଗାର – ମୋ କପାଳରେ ଲେଖା ।

ମଦ ମାଂସର ସଙ୍ଗିନୀ
ହେବ ନିରୁପମା ପୁଣି
ହେଉଛି ଅସହ ଶୁଣି ଅହରହ
ବନ୍ଧୁ ତୁମ୍ଭ କାନ୍ଦାବାଣୀ
ପିତା କରଣୀ ହେ । ୫ ।

ହୋଇ ଲହୁଣୀ ପିତୁଳା
ବୋଲଇ ପୁଣି ଅବଳା
ପାଟି ନ ଫିଟାଇ ସହିବୁଁ କେତେ ଏ
ଦୁରନ୍ତ ସମାଜ ଜ୍ୱାଳା
ନାରୀ ଅବଳା ହେ । ୬ ।

କନ୍ୟାକୁ ମଣି କନକ
ବଢନ୍ତି ଲୋଭୀ ଜନକ
କଂସେଇ ବେପାର ଠିକା କାରବାର
ମଣେ ମୁଁ ଘୋର ନରକ
ନାହିଁ ମୋ ଦକ ହେ । ୭ ।

---

୫ । ମଦ ମାଂସର ସଙ୍ଗିନୀ—ଜମିଦାର ପୁଅ ମଦ; ମାଂସ ଖାଏ—ତା ସଙ୍ଗକୁ ମୋତେ ଭୋଗ ସାମଗ୍ରୀ ବନାଇବ । ପିତା କରଣୀ—ବାପଙ୍କ କାର୍ଯ୍ୟ ।

୬ । ଦୁରନ୍ତ – ଅତ୍ୟାଗ୍ରହୀ; ନିଷ୍ଠୁର

୭ । କନକ – ସୁନା ।

ପରାଣ କରୁଛୁ ପଣ
ଲଙ୍ଘିବି ପିତୃବଚନ
ଲୋକ ଅପବାଦ ରହିଲେ ରହିବ
ନୋହିବ ସତ୍ୟ ଭଗନ
ଜୀବଜୀବନ ହେ ।୮।
ମୋ ନିଜ କର ଲିପିରେ
ଜଣାଇବି ଜମିଦାରେ
ତନ ମନ ମୋର ବନ୍ଧା ନିତ୍ୟାନନ୍ଦେ
ନ ଦେବି କେବେଁ ଆନରେ
ରଖ ମନ ରେ ।୯।
ବାନ୍ଧିଛୁ ଏଡ଼େ ସାହସ
ଅସ ନେଲୁ ମୋର ଅସ
"ନିରୁ" ଡ଼ାକି ମୋରେ କୋଳେ ଅଉଜାଅ
ଚଢ଼େ ମୋ ଭର ଅଶ୍ୱାସ
ଜୀବଜୀବେଶ ହେ ।୧୦।
ବଳଙ୍ଗା ମେଳଣ ଠାରେ
କିଣିଥିଲ ପଗ୍ର ମୋରେ
କେତେ କଣ ଅଣି ଦେବାକୁ କହିଲ
ଲତାଇ ତୁମ୍ଭର ଉରେ
ଅତ ନିର୍ଭରେ ହେ ।୧୧।

---

୮ । ପରଣ କରିଛୁ ପଣ—ମୁଣ୍ଡରେ ପାଣି ଛଡ଼ାଇ ଦେଇଛୁ ।
୯ । କରଲିପି—ହାତର ଚିଠି; ତନ—ଦେହ ।
୧୦ । ଅଶ୍ୱାସ—ଦମ୍ଭ ।
୧୧ । ଲତାଇ—ଲତା ଭଳି ଅଉଜି ।

ଘରେ ଆମ ପରଶତ
ଥିଲେ ତୁମ୍ଭ ତାତମାତ
ଗୋକୁଳ ଉପମା ଦେଶଙ୍କ ସୁତ ବୋଲି
ଆଦର ହେଲା ପ୍ରାପତ
ଲଜ ତ୍ୟଜତ ହେ ।୧୨।

ମେଲନ୍ତି ବିଦାୟ ବେଳେ
ଲକ୍ଷି ରହି ତୁମ୍ଭ କୋଳେ
ମୁଁ କହିଲି ମୁଁ ଏହାଙ୍କୁ ନ ଛାଡ଼ିବି
ରହିବି ଏହାଙ୍କ ମେଳେ
ସେନେହ ଭେଳେ ହେ ।୧୩।

ବରଷ ନଅ ମାତର
ନାହିଁ ଛଅଟି କୃତର
ତଥାପି ବାଳକା ବୟସୁଁ ହୋଇଲି
ସାରଣୀ ପ୍ରୀତି ହାତର
ଗୁହ୍ୟ ମାତର ହେ ।୧୪।

ନେବାକୁ ତୁମ୍ଭଙ୍କୁ ଘରେ
ଅଡ଼ି ବସିଲି ଯାତରେ
ଜିଦ ଦେଖି ମୋର ହେଲା ଅସିଦାର
ତୁମ୍ଭଙ୍କୁ ମୋ ସହିତରେ
ମୋର ହିତରେ ହେ ।୧୫।

---

୧୪। ସାରଣୀ—ଖେଳର ନହୁ ।
୧୫। ଅଡ଼ି ବସିଲି—ଜିଦ୍ ଧରିଲି ।

ଥାଏ ବୋଉ ଫରମାସ
ଛୁଟି ହେଲେ ତୁମ୍ଭେ ଅସ
କେତେ ନୂଆ ବସ୍ତ୍ର ଅଣ ମୋହ ପାଇଁ
ମୋ ମନ କର ଉଲ୍ଲାସ
ଜୀବଜୀବେଣ ହେ ।୧୭।

ପୋଷଣଗୁଲୁ ସଙ୍ଗେ ନାଅ
ହାତରେ ଗାଧୋଇ ଦଅ
ମୁଁ କେବଳ ମୁଖେ ଦେଖଇ ଅନନ୍ଦ
କି ଅନନ୍ଦ ମୋଠୁଁ ପାଅ,
ହେ ପରପୂଅ ହେ ।୧୭।

ବହୁତ ବସ୍ତ୍ର ପିନ୍ଧାଇ
କାହାଣୀ ଯାଅ ହେ କହ
ଶକୁନ୍ତଳା ଜୁଲିଏଟଙ୍କ ଚରିତ
କେବେଁ ମୋ ଭୁଲ ନ ଯାଇ
ନିତେଇ ଭାଇ ହେ ।୧୮।

ହେଲି ଚଉଦ ବରଷ
ଜୀବନେ ମୋ ମଧୁମାସ
ତୁମ୍ଭ ହାତେ ମୋରେ ଦେବା ପାଇଁ ବାପା
ଛଲେ ଧନେ ପରକାଶ
ବୋଉ ନ ବରଷ ଟମ ।୧୯।

---

୧୭ । ଫରମାସ—ବରାଦ ।

୧୮ । ଶକୁନ୍ତଳା—କାଳିଦାସଙ୍କ ପ୍ରଣୟିନୀ ନାୟିକା; ଜୁଲିଏଟ—ସେକ୍ସ ପିଅରଙ୍କ ପ୍ରଣୟିନୀ ନାୟିକା ।

୧୯ । ମଧୁମାସ—ବସନ୍ତକାଳ ।

ତୁମ୍ଭେ ଇନ୍ଦୁ ସିନ୍ଧୁ ମୁହିଁ
ହରଷ ମୋ ନୁହେ କହି
ଛୁଟିରେ ନ ଆସି ପାର ଯଦି କେବେ
ବିରହେ ହୁଏ ଯା ଡାହି
କୁହା ନ ଯାଇ ହେ ।୨୦।

ଚଇଠେ ମନ୍ଦେ ହୃଦୟ
ମନ ମୋ ହୁଏ ଅଥୟ
ବିହଙ୍ଗର ପକ୍ଷ ଦେବା ପାଇଁ ମୋତେ
ଧାତାରେ କରେଁ ବିନୟ
ମୁଁ ଅନୁନୟ ହେ ।୨୧।

ଅସ ନଇବେ ଯେବେ ସଖା
ନ ଦିଏ ପୂର ମୁଁ ଦେଖା
ମନ ଥାଏ ଅଙ୍ଗେ ଅଙ୍ଗ ଯୋଡ଼ିବାକୁ
ଅଚରଣ ଲୋକଦେଖା
ପରାଣ ସଖା ହେ ।୨୨।

---

୨୦ । ଡାହି ହେବା—ନିଆଁ ଧାସରେ ସିଝିବା ।

୨୧ । ବିହଙ୍ଗ—ପକ୍ଷୀ; ଚଢ଼େଇ ।

୨୨ । ଲୋକ ଦେଖା—ଲୋକଙ୍କୁ ଦେଖାଇ ହେବାକୁ ଲଜ୍ଜା ।

ପାଣିଅଁ କରେ ମୁଁ ଯେଣ
ସଜାଡ଼ି ଥିଲି ମୋ ବେଣୀ
ତୁମ୍ଭେ ପହଞ୍ଚିଲ କେହୁ ଥିଲେ ନାହିଁ
ଦଇବେ ମୁଁ ଏକାକିନୀ
ବେଶ ମୋହିନୀ ହେ ।୨୩।

ଅଜିଙ୍କାର ମୋରେ ଉରେ
ପରଶି ଗଣ୍ଡ ଗଣ୍ଡରେ
ଭସିଲ 'ନଟୁ'ରେ ଅଧା ମୋ ଭିତୁରେ
ଏତେ ଲଜ୍ଜା ପୁଣି ମୋରେ
ଦୁଃଖେ ମୁଁ ମରେ ହେ ।୨୪।

ଲଲାଟେ ଚନ୍ଦନ ବିନ୍ଦୁ
ଉରସେ ତୁ ମୋର ଇନ୍ଦୁ
ପ୍ରେମରଚନାକୁ ବାଣୀ ତୁ ରେ ମୋର
ରୂପରେ ଶଶୀକୁ ନିନ୍ଦୁ
ପରାଣ ବନ୍ଧୁ ହେ ! ।୨୫।

ତୁ ପରା ମୋରେ ଛଇଲା
ଜୁଲିଏଟ ଶକୁନ୍ତଳା
ବର ଦିଅ ମୋରେ ହେବୁ ତୁ ମୋ ଉରେ
ପ୍ରେମ ବୈଜୟନ୍ତୀ ମାଳା
ପୀରତିଶୀଳା ହେ ।୨୬।

---

୨୫ । ଲଲାଟେ—କପାଳରେ; ଉରସେ—ଛାତିରେ; ଇନ୍ଦୁ—ଚନ୍ଦ୍ର;
ପ୍ରେମରଚନାକୁ ବାଣୀ—ମୋତେ ପ୍ରୀତିବିଦ୍ୟା ଦେବାକୁ ସରସ୍ୱତୀ ।
୨୬ । ବୈଜୟନ୍ତୀ ମାଳା—ବିଜୟର ହାର ।

ତୁ ମୋର ମୁହିଁ ତୋହର
କର ଅଙ୍ଗ ଅଙ୍ଗୀକାର
ରାଜହଂସ ଗତି ଲାଜ ତୁ ବରଜ
ମୁଁ ପରି ତୋ ପରିସ୍କର
ସୁମନାବର ରେ ।୨୭।

ଏବେ ମୁଁ ତୁମ୍ଭ ଲାଗି
କେତେ କାସ ଗଲି ଜାଗି
ସବୁର ମରମ!— ଚରଣ ତଳର
ଦାସୀ ପଣେ ମୁଁ ଯୋଗାଇ
ଶରଣ ଦେଲୁ ହେ ।୨୮।

ବାହୁ ବନ୍ଧନକୁ ଫେରି
ଲପନେ ମୋର ଅନାଇ
ହସିଲ ନବ ଖ୍ରର କେତେ ମାତର
ଦେବତା ହୋଇବେ ବାଇ
ତୋରେ ଅନାଇଁ ରେ ।୨୯।

ଚନ୍ଦନପୋଖରୀ ଜଳେ
ପଡ଼ୁଁ କୁମ୍ଭୀର କବଳେ
ସନ୍ତରଣ ତୁମ୍ଭେ ବଞ୍ଚାଇଲ ମୋରେ
ଅଘାତ ସହୁ କପାଳେ
ମୋ ପାଇଁ ହେଲେ ହେ । ୩୦ ।

୨୭ । ପରିସ୍କର—ସେବକ ।
୨୯ ନେହ—(ସ୍ନେହ) ଶବ୍ଦ ।

'ଜୀବନ ଦେଇଛୁ ବଳି
ରଖ ହେ ପରସ୍ତ୍ରୀଙ୍କ
ହେ ଜୀବଜୀବନ ରାଜସିଂହାସନ
ତୁମ୍ଭ ବିନୁ ଧିକ ଧିକ
ମୁଁ ସେ ସେବକୀ ହେ । ୩୧ ।
ପିଅରଙ୍କୁ ପୁଣି କହୁଛୁ ଜନନୀ
ତୁମେ ମୋ ହୃଦୟ ରାଣୀ
ସେ ସେ ପାଷାଣ ହେ । ୩୨ ।
ହେ ମୋ ଗର୍ଭ ମଲ୍ଲେଶ୍ୱର ।
ଦ୍ୱିତୀୟ ଜୀବନ ମୋର
ଅସୁଚ୍ଛୁ ସଂକଟ ଆସ ମୋ ନିକଟ
ବଢାଇଣ ଦଅ କର
ପରାଣେଶ୍ୱର ହେ । ୩୩ ।
ହୋଇବି ଜନକଦ୍ରୋହୀ
ଦୋଷ୍ଟରୁଣୀ ହେବି ନାହିଁ
ଅସ ପ୍ରିୟତମ, ହର ଶତ୍ରାମମ,
ଦୁଃଖିନୀ, ମୋ ସମ ନାହିଁ
କି କହିବଇଁ ହେ । ୩୪ ।
ଜମିଦାର ଘର ଦାସୀ
ବିଳେଇ ମୋ ଶୋଭାରାଶି
ଜମିଦାର ସୁତ, ଭାଗ୍ୟବନ୍ତ ଭାଷି
ହରଷେ ଯାଅନ୍ତି ଭାସି
ନବବୟସୀ ହେ । ୩୫ ।

୩୨ । ହୃଦୟରାଣୀ—ମନର ରାଜା ।

ହରଷେ ଯାଅନ୍ତ ଭସି
ନବବୟସୀ ହେ !। ୩୫ ।

ଇମିଦାରେ ଲେଖିବଇଁ
ପିଅରେ ଦେଖ ଜଣାଇଁ
ହୋମ ଘିଅ ନୁହେ କୁକୁର ଅହାର
କୁକୁର କାହିଁକ ବାଇ ?
ହା ମୋ ନାତାଇ ହେ ! । ୩୬ ।

ଦୁଃଖବାଟେ ପଦ ସ୍ଖଳ
ସୁଖେ ଦେଲ ଜଳାଞ୍ଜଳି
ଜୀବନଦୋସର, ନିତ୍ୟାନନ୍ଦ ମୋର !
ଆସ ମୋ ରଙ୍କ ସଙ୍ଖାଳି !
ମୁଁ ତୁମ୍ଭ ବାଳୀ ହେ !। ୩୭ ।

ଭାଷିଥିଲ ଦିନେ ମୋରେ
ଜନମ ତୁମ୍ଭ ମଧ୍ୟରେ
ମୋହର ଅଙ୍ଗର କବଚ ହେବାକୁ,
ଥିବ ତା ତୁମ୍ଭ ମନରେ
ଝୁରୁ ତା ମରେଁ ହେ !। ୩୮ ।

---

୩୮ । କବଚ—ସାଞ୍ଜୁ ।

ଦୂଷଣ ଘୋଷଣ ବାଜୁ
ଲଜ୍ଜା ବନ୍ଧ ପଛେ ଭାଙ୍ଗୁ
ନିରୁପମା ନାରୀ ନୋହିବ ଦୋଷୀ
ପିତା ତା ପଛେ ଗରଜୁ
ବାଧା ସରଜୁ ହେ ! । ୩୯ ।

ତଟିନୀ ତେଜିବ ଗିରି
ସିନ୍ଧୁକୁ ଯିବ ବାହାରି,
ଚିରି ତରଜନ ସିନା ଅକାରଣ
ରୋଧି ହୁଏ କି ତା ବାରି ?
ନାରୀ ତା ସରି ହେ ! । ୪୦ ।

ପାଳିବି ପତିବ୍ରତ
ଭୁଞ୍ଜିବେ ମୋ ଲୋଭୀ ତାତ,
ଏ ଦେହ ତାହାର ଯାହାକୁ ଅନ୍ତର
ହୋଇଛନ୍ତି ଇଚ୍ଛାରେ ଦତ୍ତ
ଜାଣ ନିଶ୍ଚିତ ହେ ! । ୪୧ ।

---

୩୯ । ଦୂଷଣ ଘୋଷଣ—ନିନ୍ଦା ।

୪୦ । ତଟିନୀ—ନଦୀ; ଗିରି—ପର୍ବତ; ସିନ୍ଧୁ—ସମୁଦ୍ର ।

ମୋ ନିରାନନ୍ଦ ଆନନ୍ଦ !
ଆସ ମୋର ନିତ୍ୟାନନ୍ଦ !
ମୋ ପତିବରତ                    ପୃଥ୍ୱୀରାଜବତ
ରଖ ଦେଖି ଜୟଚନ୍ଦ
ଦୁର୍ଜନ ମନ୍ଦ ହେ ! । ୪୨ ।

ହୋଇଛନ୍ତି ବୟସ ମୋର
ଆଉନକୁ ନାହିଁ ଡର
ପ୍ରେମ ଯୋଗୀ ପ୍ରେମ—        ଯୋଗିଆଣୀ ସାଜି
ସମାଜେ ଦେବା ଉତ୍ତର
ସଂକଳ୍ପ ମୋର ହେ ! । ୪୩ ।

ମୁକ୍ତା ଆକାଶ ତଳେ
ଅବା ମହୀରୁହ ମୂଳେ
ଉଭେ ତୁମ୍ଭ ମୁଁ              ଅଜଡ଼ ଠିଅ ହେଲେ
ଶଚୀଭୂତ ପାଦତଳେ
ଜାଣେ ମୁଁ ଭଲେ ହେ ! । ୪୪ ।

---

୪୨। ପୃଥ୍ୱୀରାଜ—ଜୟଚନ୍ଦ—ଜୟ ଚନ୍ଦଙ୍କ ଝିଅ ସଂଯୁକ୍ତା ମନେ ମନେ ପୃଥ୍ୱୀରାଜଙ୍କୁ ବରଣ କରିଥିଲେ କିନ୍ତୁ ଜୟଚନ୍ଦ ପୃଥ୍ୱୀରାଜଙ୍କୁ ସଂଯୁକ୍ତାଙ୍କ ସ୍ୱୟମ୍ବରକୁ ନିମନ୍ତ୍ରଣ ନ କରି ତାଙ୍କୁ ଅପମାନ ଦେବାପାଇଁ ତାଙ୍କ ମୂର୍ତ୍ତିକୁ ଦ୍ୱାରପାଳ ରୂପେ ଥାପି ଦେଇଥିଲେ । ପୃଥ୍ୱୀରାଜଙ୍କ ମୂର୍ତ୍ତି ବେକରେ ସଂଯୁକ୍ତା ମାଳ ଦେଲେ ଏବଂ ପୃଥ୍ୱୀରାଜ ଲୁଚିରହି-ଥିବା ସ୍ଥାନରୁ ଆସି ସଂଯୁକ୍ତାଙ୍କୁ ଘୋଡ଼ାରେ ବସାଇ ଘେନି ଯାଇ ଥିଲେ ।

୪୪। ଶଚୀଭୂତ—ଇନ୍ଦ୍ରାଣୀଙ୍କ ସମ୍ପଦ ।

ଶଙ୍ଖ ଥରେ ନେଲେ ସ୍ୱୈର
ସଂସାରେ ଥାଏ କି ଡର ?
ସଂଯୁକ୍ତା ସମାନ ମୁହିଁ ଭୀତହୀନ
ପୃଥ୍ୱୀରାଜ ହୁଅ ମୋର
ହୃଦତସ୍କର ହେ ! । ୪୫ ।

ପଥ ଚାହିଁ ଅଛୁ ବସି
ଆସ ମୋ ମାନସ ରାଣୀ ।
ନଅଣା ସବତେ ଧରଣୀ ବୁଡ଼ୁଛି
ନିରୁପମା ଯାଏ ଭାସି
ଛଇଳ ଅସି ହେ !। ୪୬ ।

୧୯୪୫



—୭୩—

ସମର-ଶଙ୍ଖ

## ସଚ୍ଚିଦାନନ୍ଦ ଭୂୟାଁ ।

( ରାଗ—କାମୋଦୀ )

ଉତ୍କଳେ ନିରାନନ୍ଦ    କରି ସଚ୍ଚିଦାନନ୍ଦ !
ତ୍ରିଦିବେ ଯାଇଛ ବାହାର
ତେଜି ବ୍ୟୋମବିହାର    ମହାବ୍ୟୋମରେ ଘର
କରି ରହିଛ ବ୍ୟୋମଚାରି
ହେ ଶୂରମଣି !
ହରାଇ ତୁମ୍ଭଙ୍କୁ ଉତ୍କଳ
ନୟନୁ ନିଗାଡ଼ଇ ଜଳ,
ସ୍ମୃତିପୂଜା ବାସରେ    ପ୍ରସନ୍ନ ମାନସରେ
କ୍ଷଣିକ ଲାଗି ଅବତର
ହେ ବ୍ୟୋମଚାରି !

---

ଦୁର୍ଘଟଣାରେ ମୃତ ଉତ୍କଳର ପ୍ରଥମ ଉଡ଼ାଜାହାଜ ଚାଳକ କୁମାର ସଚ୍ଚିଦାନନ୍ଦ ଭୂୟାଁଙ୍କ ସତୀଚଉରା ସ୍ମଶାନ ସମାଧି ସ୍ଥାପନ ଉପଲକ୍ଷେ ରଚିତ ।

୧ । ମହାବ୍ୟୋମ—ସ୍ୱର୍ଗ, ବ୍ୟୋମଚାରୀ—ଆକାଶ ବିହାରୀ; ଅବତର—ସ୍ୱର୍ଗରୁ ଓହ୍ଲାଇ ଆସ ।

ଏ ଜାତି ନାହିଁ ମରି ସୁପ୍ତ କେଶରୀ ସରି

ଅଛୁ ନିର୍ବେଦ ଭବ ଭଜି

କଲ୍ ଏହା ପ୍ରମାଣ କରି ମହାପ୍ରସ୍ଥାଣ

ଶୂରକାଙ୍କ୍ଷିତ ଭୂତ ଅର୍କ

ହେ ଧୀରମଣି !

ଶହୀଦ ମଧ୍ୟେ ଗଣ୍ୟ ହୋଇ

ଉତ୍କଳ ସମ୍ମାନ ବଢ଼ାଇ

ଅକାଳରେ ଶ୍ମଶାନ କଲ୍ ଯାହା ବରଣ

ଦହେ କେବଳ ହୃଦ ତାହି

ହେ ଧୀରମଣି !

ଦରିଦ୍ର ଦୁଃଖ ଦେଖି ଆର୍ଦ୍ର କରିବା ଆଖି

ଅକୁଣ୍ଠ ଚିତ୍ତେ ଦେବା ଦାନ

ଦୁର୍ଲ୍ଲଭ ଗୁଣାବଳି ଥିଲା ତୁମ୍ଭର ବୋଲି

ଜୀବନ ତୁମ୍ଭର ମହାନ

ହେ ବୀରୋତ୍ତମ !

---

୧। ନିର୍ବେଦ ଭବ — ନିଷ୍ଫଳ ଭବ, ଶହୀଦ — ( ଯାବନିକ ଶବ୍ଦ ) — ମହତ କାର୍ଯ୍ୟରେ ପ୍ରାଣ ଦେଉଥିବା ବ୍ୟକ୍ତି । ଆର୍ଦ୍ର — ଓଦା;

ତୁମ୍ଭ ସୁଗୁଣ ମୁଗ୍ଧ ଦେଶ
ପ୍ରୟାଣେ ତୁମ୍ଭ ହା-ହୁତାଶ
କାଳ ବରଷସାରା          ଡାକଇ ଅଜ ପରା !
ଯେନ ଶରଧା ସୁମନସ
ହେ ବୀରୋତ୍ତମ !

ବିଶ୍ୱେ ସବୁ ନଶ୍ୱର          କୀରତି ଅନଶ୍ୱର
କୀରତି ଦେହେ ଅଧ୍ୟୁଷ୍ଠାନ
ହୋଇ ରହିବ ବୀର          ଚନ୍ଦ୍ରମା ଦିବାକର
ମଣ୍ଡିବେ ଯାବତ ଗଗନ
ହେ ଶୂରବର !

ଶତାବ୍ଦୀ ବୀର୍ଯ୍ୟ ପରମ୍ପରା
ରକ୍ଷି ଅକ୍ଷୁଣ୍ଣ ବୀରଧରା
ବୋଲାଉ ପୂର୍ବପର          ଜନ୍ମ ଭୂମି ଅମ୍ବର
ବରଷ ଏ ସଦିଚ୍ଛା ଧାରା
୧୯୪୬          ହେ ଦିବବାସି !



---

୬ । ସୁମନସ — ଫୁଲ, ନଶ୍ୱର — ଅସ୍ଥାୟୀ ।

—୨୪—

# ସେ କାଳ ବିପକ୍ଷୀ ଏ କାଳ ତାନ

[ ରାଗ—ରସକୁଲ୍ୟା ]

ପ୍ରାଣ-ପ୍ରଚୁରତା ଏ ଦେଶେ ଆଜ
ନାହିଁଛି ନସୃତ ସାଧୁଛି ଦାଉ,
ଜଡ଼ତା-ଅଜ୍ଞାନ-ଘନ-ଅନ୍ଧାର
ଘୋଟିଛି ଏ ଦେଶେ ଚଉଦଗର ଯେ
ପ୍ରାଣେ କାହିଁ ପ୍ରଫୁଲ୍ଲତା ଯେ ?
କଣ୍ଠରୁ ଛୁଟିବ     ସଙ୍ଗୀତର ଉତ୍ସ
ଦେଇ ଆନନ୍ଦର ବାର୍ତ୍ତା ଯେ । ୧ ।

ଗଡ଼ ବାରବାଟୀ ଉନ୍ନତ ଶିର
ଭୂଲୁଣ୍ଠନେ ଆଜ କି ନାରଖାର !!
କାପୁରୁଷ ପଦ ଭାର ମାଟିରେ
କରି କଳୁଷିତ କାଡୀ ଛାତିରେ ଯେ
ମାରଦଏ ଉତ୍କଳୀର ଯେ!
ଶଉର୍ଯ୍ୟ-ମୟୂଖ     ଯାଇଛି ଉଭେଇ
ଥିଲା ଯା ଜଳସ୍ଥଳର ଯେ । ୨ ।

---

୧ । ପ୍ରାଣ ପ୍ରଚୁରତା — ଉତ୍ସାହ, ଉନ୍ମାଦନାଦ ଜୀବନ ପରିଗ୍ରହକ ଗୁଣର ଯଥେଷ୍ଟତା; ଦାଉ ସାଧୁଛି — ଅଦେଖ ସାଧୁଛି ।
୨ । ଭୂଲୁଣ୍ଠନେ ଭୂଇଁରେ ଲୋଟିବାରୁ, ଶୌର୍ଯ୍ୟମୟୂଖ — ବୀରତ୍ୱର ଆଭା ।

ଭଞ୍ଜ ଦୀନକୃଷ୍ଣଙ୍କର ପରତେଣେ
ବାଣୀବୀଣା ସର୍ଜିଥିଲ ଯେ ରସେ
କବିରବି ଅଦ୍ୟ ସେ ରସପୂରେ
ଭସାଇଲେ କୁଠୀ ସଉଧ ପୁରେ ଯେ
ତା ସମାନ ରସ କାହିଁ ହେ ?
ନବଯୁଗ କର୍ଣ୍ଣ— ରସାୟନ ହେବ
ଶୁଣିବେ ଭଉଣୀ ଭାଇ ଯେ ? । ୩ ।

ଗାଉଛୁ ଉତ୍କଳ ପରସଙ୍ଗୀତ
ନ ଜାଣୁଛୁ ନିଜେ ନିଜର ବିତ୍ତ,
ସେ କାଳ ବିପଞ୍ଚୀ ଏ କାଳ ତାନ
ଯୋଗ ବିନା ଧନୀ ହାରୁଛୁ ମାନ
ଛନ୍ଦ କଳ୍ପତରୁ ତଳେ ଯେ
ରହି ରସସୁଧା ନ ମେଣ୍ଟୁଛୁ ତାର
ଭାଗ୍ୟେ ବଳିବ କେ ବଳେ ଯେ ? ।୪।

---

୩ । ଭଞ୍ଜ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ – ଦୀନକୃଷ୍ଣ ଦାସ; ପୂର – ସ୍ରୋତ କୁଠୀ – କୁଟୀର; ସୌଧ – ପକ୍କା, କର୍ଣ୍ଣରସାୟନ – କାନର ପ୍ରିୟ ।

୪ । ସେ କାଳ ବିପଞ୍ଚୀ ଏକାଳ ତାନ – ଏଠାରେ ଅର୍ଥ ପ୍ରାଚୀନ ସହିତ ନବୀନର ସମାବେଶ; ଛନ୍ଦକଳ୍ପତରୁ – ଓଡ଼ିଶାର ପ୍ରାଚୀନ ସାହିତ୍ୟରେ ଅଗଣିତ ଛନ୍ଦ ରହିଛି; ତେଣୁ ତାର ଏ ନାମ ।

ଗାଅ ବାଣୀସୁତେ ! ଵୀରସଙ୍ଗୀତ
ଵୀର ମେଦନୀ ଏ ହେଉ ସ୍ପନ୍ଦିତ;
ପ୍ରାଚୀନ ଛନ୍ଦରେ ଵିଶ୍ୱଭାବନା
ତାଳ ଗାଅ କଵି ଉତ୍ଫୁଲ୍ଲ ମନା ! ଯେ
ମଧୁଧାର ଵର୍ଷେ ସିଞ୍ଚ ହେ
ଅନାଗତ ଵଂଶଧରଙ୍କ ପାଇଁ କି
ଗୁରୁ ଗଉରଵ ସଞ୍ଚ ହେ । ୫ ।

୧୯୩୬



---

୫ । ଅନାଗତ — ଜନ୍ମ ହୋଇ ନ ଥିବା ।

—୨୫—

# ନୃସିଂହ ଚରଣ ମହାନ୍ତି

( ରାଗ—ରସକୁଲ୍ୟା )

ଦୁଃଖିନୀ ଓଡ଼ିଶା ଦୁଃଖ ସଙ୍ଖାଳି !
ସାହିତ୍ୟ ଅରାମ ନବୀନ ମାଳି !
ନବୋଦିତ ଯୁବକୁଳ ଚନ୍ଦ୍ରମା !
କାହିଁ ଗଲ ସର୍ଜି ଅକାଳେ ଅମା
ବନ୍ଧୁ ନୃସିଂହ ଚରଣ ହେ !
କେଉଁ ରାଇଜରେ ଛପାଇଲ ମୁହିଁ
ଦେଇ ଏ ଗୁରୁ କଷଣ ହେ ? ।୧।

ପାଷାଣେ ପିହିତ ଜନନୀ ହିଆ
ବୋଲି ସିନା ହାଦେ ସହିଲ ଏହା,
କେତେ ଆଶା କେନ୍ଦ୍ର କରି ତୁମ୍ଭଙ୍କୁ
ପୋଷିଥିଲା ଭାଙ୍ଗି ଦେଇ ତା ବୁକୁ
କଲ ଅକାଳ ପ୍ରୟାଣ ହେ
ଉତ୍କଳ ଗୌରବ— ମନ୍ଦିରରେ ତୁଚ୍ଛ
କରି ନିଜ ଉଚ୍ଚ ସ୍ଥାନ ହେ । ୨ ।

---

କବିଙ୍କର ସୁନାମଧନ୍ୟ ଯୁବକ ବନ୍ଧୁ, କବିଙ୍କ ସହିତ ମିଶି Greater Utkal League (ବୃହତ୍ତର ଉତ୍କଳ ସଂଘ) ଗଢ଼ି ତହିଁର ସଭାପତି ହୋଇଥିଲେ । ୧ । ଆରାମ – ବଗିଚା ।
୨ । ତୁଚ୍ଛ – ଶୂନ୍ୟ ।

ସ୍ୱାର୍ଥରୁ ଫେରି ତ୍ୟାଗର ପଥ
ଗମିବାକୁ କରି ବସିଲ ବ୍ରତ
କରି ନିରନ୍ତର ଜନନୀ ସେବା
ଦେଖାଇଲ ଦେଶେ ଯା କରେ ଯୁବା
ଜାତିର ମୁକତି ପାଇଁ ହେ
ସୁଖେ ଜଳାଞ୍ଜଳି ଭୋଗେ ଜଳାଞ୍ଜଳି
ଧନ-ଗାରିମା ହଜାଇ ହେ ।୩।

ଆଡ଼ମ୍ବର ଜାଣି ନ ଥିଲ ଲବେ
ଗରବ ତ ରଖି ନ ଥିଲ ଯବେ
କାନ୍ତସ୍ମିତେ ସଦା ଆଲୋକ ମୁଖ
ଭାସି ଗିରି ଦେଇ ନାହିଁ କି ସୁଖ !!
ଯେ ଜାଣିଥିଲ ତୁମ୍ଭଙ୍କୁ ହେ
ଅକାଳରେ ଚଳି ! ଯାଇ ବନ୍ଧୁବର !
ଶେଲେ ବାନ୍ଧିଲ ତା ବୁକୁ ।୪।

ନବୀନା ଅବଳା ମୁଖୁଁ ସିନ୍ଦୁର
ପିତା-ଡାକ ରସନାରୁ ଶିଶୁର
ନେଇ ଯିବା ବନ୍ଧୁ ! କେଡ଼େ ପରୁଷ
ଶ୍ୱଶୁର-ଦମ୍ପତୀ କଲ କି ଦୋଷ ହେ
କି ଦୋଷେ ଦୋଷୀ ଏ ଦେଶ ହେ ?
ସେ ଦେଶକୁ ଗଲ ନ ଫେରନ୍ତି ଯହୁଁ
କାଳେ କାଳେ ତ ସନ୍ଦେଶ ହେ । ୫ ।

୪ । କାନ୍ତ – ମନୋହର ।

୫ । ନବୀନାଅବଳା – ଯୁବତୀ ଭାର୍ଯ୍ୟା; ରସନା – ଜିଭ; ପାଟି, ପରୁଷ – କଠୋର-ନିର୍ଦ୍ଦୟ; ଶ୍ୱଶୁର – ଦେଓ୍ୱାନ ବାହାଦୁର ଲକ୍ଷ୍ମୀଧର ମହାନ୍ତି, ସନ୍ଦେଶ—ଖବର ।

ଯହୁଁ ତହୁଁ ଥାଅ ହେ ଗୁଣିବର !
ଝୁରୁଥିବୁଁ ସିନା ଗୁଣ ତୁମ୍ଭର !!
ଦଇର୍ଘେ ଜୀବନ ନୁହଇ ମପା
ମାପକାଠି ସିନା ତା ଗଭୀରତା
ତହୁଁ ତୋର ପରମିତ ଯେ
ଯାହା ବୋଲ ତୁମ୍ଭ ଜୀବନ ଅଭ୍ୟସେ
ତାରେ ବକ୍ଷ ଅମ୍ଭ ସ୍ଫୀତ ଯେ । ୭ ।

ମରଣ ପରଦା ଏ ପଟେ ରହି
ଶରଧା ଅଞ୍ଜଳି ଟେକୁଛୁ ଭାଇ !
ଭାଜାଗଲ ପର ଦକ୍ଷିଣୀ କର
ହୁଏ ପରତୀଏ ବିୟୋଗେ ତୋର ରେ
ଜୀବନ ସଉଦା ମୋର ରେ
ସରିଗଲା ଯାଏଁ ଭାଇ ନୃସିଂହ ରେ !
ସ୍ମୃତ ହୃଦେ ଉଜାଗର ରେ । ୭ ।

୧୯୩୫



୭ । ସ୍ଫୀତ — ଫୁଲିଥିବା ।



—୨୭—

## ବାରବାଟୀ

ଢୁଲଇଛି ଗାଢ଼ ନିଦେ ଏଥି ସ୍ୱାଧୀନତା
ମୂକ ଏଥି ଅହା କେତେ ଗଉରବ ଗାଥା !
ଏହୁ ପଥେ ହେ ଉତ୍କଳି ! ଯାଅ ଯେହୁ ଚଳି
ଜାଣି ଦଳୁଅଛ ପଦତଳେ କେଉଁ ଧୂଳି ? । ୧ ।

ସ୍ୱାଧୀନ ଓଡ଼ିଆ ଜାତି ଧମନୀ ଶୋଣିତ—
ଅସାରେ ଏ ଧୂଳି ଭରି ! ହୋଇଛି ଧଉତ;
ଉତ୍କଳର ଗଉରବ ମଶାଲ୍ ଅଲୁଅ
କଳାପାହାଡ଼ର ହାତେ ଭଜି ଅସ୍ତ ଲୟ । ୨ ।

ସ୍ୱାଧୀନତାଦେବୀଙ୍କର ରମ୍ୟ ନିକେତନ
ନବତଳ ଦୁର୍ଗ ଆଜି ନିଶାର ସପନ;
ଗତ ବିଭବର ମୂକ ସାକ୍ଷୀ ଅସହାୟ
ଠିଆ ଭଙ୍ଗା ଗଡ଼ଦ୍ୱାର ପ୍ରହରୀ ପରାୟ । ୩ ।

ଯେଉଁ ପରିଖାର ଜଳ ପ୍ରାଚୀର ଅରୋଧି
ସୈନ୍ୟଙ୍କର ପ୍ରତିବନ୍ଧ ଥିଲା ଦିନେ ବହି
କ୍ଷେତ ହୋଇ ସହେ ସେହୁ ଲଙ୍ଗଳର ଗାର
ବେଦନା ଦେଖାଏ ଅବା ଶରିଇଣ ଭର !! । ୪ ।

---

୨ । ଅସାର — ଅସର, କଳା ପାହାଡ଼ — ବଙ୍ଗଳା ନବାବଙ୍କ ଜ୍ୱାଇଁ ଓ ସେନାପତି — ଓଡ଼ିଶାର ସ୍ୱାଧୀନତା ତାହାର ହାତ ଲୁପ୍ତ ହୋଇଥିଲା ।

୩ । ନବତଳ ଦୁର୍ଗ—ବାରବାଟୀ ଦୁର୍ଗ ନଅ ମହଲା କୋଠା ଥିଲା ।

୪ । ପରିଖା—ଗଡଖାଇ; ପ୍ରତିବନ୍ଧ—ଛଇ; କ୍ଷେତ ହୋଇ—ବାରବାଟୀର ଗଡଖାଇରେ ଏବେ ଧାନକ୍ଷେତ ହୋଇଅଛି ।

ଉତ୍କଳ ନରେଶଙ୍କର ଇଚ୍ଛି ପରସାଦ
ଆଣି ଉପଢଉକନ ମଣ୍ଡି ଏ ପ୍ରାସାଦ
କେତେ ଯେ ବିଦେଶୀ ରାଜଦୂତେ ସ୍ୱଦେଶର
ଧ୍ୱଜା ତଳେ ଅବନତ ଥା ତ ଅସୁମାର । ୫ ।

ଦୁର୍ଗେଶ ବିଜୟବାଦ୍ୟେ ଏ ଦୁର୍ଗ ପ୍ରାଚୀର
କେତେ କେତେ ବାର ଦେଇନାହିଁ ପ୍ରତିଗିର !!
ରାଜକୁଳଲକ୍ଷ୍ମୀଙ୍କର ହୁଳହୁଳି ନାଦ
ସୁଝୁଇ ନାହିଁ ବା କେତେ ବିଜୟର ମୋଦ !! । ୬ ।

ହୁତ ବହୁଦନ୍ତୁ ସବୁ କାଳର ପ୍ରଭାବେ,
ଅତୀତର ଗାଥା ଝିଲ୍ଲୀ ଭଣଇ ଅରାବେ,
ବାର୍‌ବାଟୀ ଲୋତକରେ ଲୋତକ ମିଳାଇ
କାନ୍ଦନାହିଁ ଯଦ ବାରେ କାନ୍ଦ ଅଜ ଭାଇ ! । ୭ ।

୧୯୩୯



୫ । ପ୍ରସାଦ—ଅନୁଗ୍ରହ; ଉପଢୌକନ—ଭେଟି; ଅସୁମାର—ଅଗଣିତ ଯାହାର ସୁମାର ନାହିଁ ।

୬ । ଦୁର୍ଗେଶ—ବାରବାଟୀ ଦୁର୍ଗର ଅଧିପତି ଓଡ଼ିଆ ସମ୍ରାଟ; ଏ ଦୁର୍ଗ ପ୍ରାଚୀର··········ସମ୍ରାଟ ବିଜୟ କରି ଫେରିଲା ବେଳକୁ ତାଙ୍କ ବିଜୟୀ ଥାଟର ବାଦ୍ୟ ସଙ୍ଗକୁ ବାରବାଟୀ ଦୁର୍ଗର ପାଚିରୀ ଉପରୁ ନହବତ୍ ବାଜି ଉଠୁଥିଲା; ରାଜକୁଳ ଲକ୍ଷ୍ମୀ········ରାଣୀହଂସ-ମାନଙ୍କର ।

୭ । କାଳର ପ୍ରଭାବେ—ସମୟର ଗତିରୁ; ଝିଲ୍ଲୀ—ଝିଙ୍କାରୀ ପୋକ । ଭଣଇ—କହେ; ଅରାବ—ରବ, ଶବ୍ଦ ।



—୨୨—

## ବାଣୀ ଆବାହନ

( ଚମ୍ପୂ ଫ ଗୀତ ବୃତ୍ତରେ )

ବରଷକ ପରେ ଡାକୁଛୁଁ ସନ୍ତାନେ ଅସ ଅସ ଅବତର
ଅଶେଷ ବିଭବ ପୂଜା ପାଇଁ ଚିତ୍ତ ସାଜିଅଛୁ ଧରି ନାସି
ମା ଭାରତି ! କରୁଣା ନ କର କୃଣା
ଭଞ୍ଜ-ରାଧାନାଥ-ଦେଶେ ଆଜି ବାରେ ବାଅ ଉନ୍ମାଦନୀ ବୀଣା ।୧।

ବିଶ୍ୱ-ଭାବାନଳ-ତରଙ୍ଗ ଯେ ଆଜି ଖେଳି ବୁଲୁଛି ଅମ୍ବରେ
ସାରସ୍ୱତ ବନେ ନାମ ପାଲଟୁଛି ଚନ୍ଦନ ସେ ମଳୟରେ ;
ମା ଭାରତି ! ତବ ଅନୁକମ୍ପା ବିନା
କବି-କଞ୍ଜବନ ଏ କଳିଙ୍ଗ ଧରି ହୋଇ ଋଦ୍ଧିମତୀ ଦୀନା । ୨ ।

ହୀନାନୁକରଣ ଯାଉ ଅପସରି ପ୍ରାଚୀନୁଁ ଆହରି ସାର
ମିଶାଇ ନବୀନ ତୁମ୍ଭରି ପୂଜନ ପାଇଁ ସଜାଡ଼ି ସମ୍ଭାର
ମା ଭାରତି ! ଧନ୍ୟ ହେଉ ଏହୁ ଦେଶ
ଦୁର୍ଗତି ଶିଶିର କାଳ ଅନ୍ତେ ଫେରୁ ଉଲ୍ଲସିତ-ମାଧବ-ମାସ ।
କଳାର ବିପଣୀ ଧନ୍ୟ ହେଉ ତାର ସାହିତ୍ୟ ହେଉ ଅତୁଳ
ହେ ବାଣୀ ବରଦେ ! ହେ ମାତଃ ସାରଦେ ! ସବୁରି ତ ତୁମ୍ଭେ ମୂଳ
ମା ଭାରତି ! ହୋଇ କଳାବିଳାସିନୀ
ବିଶ୍ୱ ସମାଜରେ ନୁଆଇଁବ ମଥା କେତେ କଳିଙ୍ଗ ଜନନୀ ?

୦-୯।୩।୬



୨ । କଞ୍ଜବନ—ପଦ୍ମବନ; ଋଦ୍ଧିମତୀ—ବିଭବଶାଳିନୀ ।
୩ । ପ୍ରାଚୀନୁଁ—ପ୍ରାଚୀନ ସାହିତ୍ୟରୁ; ନବୀନ—ନୂଆ ଭାବଧାରା; ମାଧବ ( ମଧୁ+ଅ ) ବସନ୍ତ ।



# କବିର ସଂଖାଳି

( ସଙ୍ଗ—ଭାଦୋମୋଦ୍ )

A cup of wine, a book of verse and thou
Singing beside me in the wilderness
And the wilderness is Paradise enou'
Omar Khyyam

( ୧ )

ସୁମନା ଶୋଭିଧାମ ସୁମନସ ଅଗ୍ରମ
କବର ସଂଖାଳ ଏ ଦୁଇ,
ଦିନ-ମଣି-ବହ୍ନିନ ମହ୍ନି ସମାନ ହ୍ନିନ
କବି-ଜୀବନ ଯା ନ ଥାଇ ସେ
ମନୋରମା—
କଣ୍ଠ ବାଜେଣୀ ବୀଣା ସବ
ଯେ ପୁରେ ନ ତୋଳେ ଲହରୀ
ସେ ପୁରର ଅଗ୍ରମ ନୋହେ ସୁମନ ଧାମ
ତା କବି-କବରର ସବ ସେ
ନୋହେ ମିଛ ।

---

୧ । ସୁମନା—ରମଣୀ; ଶୋଭିଧାମ—ଶୋଭିମୟୀ; ସୁମନସ—ଫୁଲ; ଅଗ୍ରମ—ବଗିଚ୍ଚ; ଦିନମଣି—ସୂର୍ଯ୍ୟ; ବାଜେଣୀ—ବାଜୁଥିବା, କବର-ସମାଧି ।

( ୨ )

କମଳା ନନ୍ଦନଙ୍କ    ଭାଗ୍ୟର ନୋହେ ଉଙ୍କ
କବ; ତା କୁଟୀରେ ପ୍ରାପତ
ହୁଏ ସକଳ ଶିଷ୍ଟ    ଏ ଦୁଇ ଦେଖ କବ
ନ ଇଚ୍ଛେ ଧନପତ ବଢ଼ ସେ
ଗନ୍ଧେଶ୍ୱର,
ନୀରୋଗ ବପୁ, ଅପ୍ରବାସ,
ଅସୂଷ ମାନ ତା ପ୍ରୟାସ
କୃପା କଲେ ବିଧାତା.    କାହିଁ କବର ଚନ୍ତା ?
ନୃପେ ରଚଇ ଉପହାସ ସେ
ବାଣୀସୁତ ।

( ୩ )

ଦେଖିଲେ ଅନ ଅଗ୍ନିପ    କବ ମଣଇ ବପ
ସେ ମାନ ଶୋଭାର ଉକାସ୍ତ
ସୁମନ, ସୁମନାରେ    ଯେ ଶୋଭା ଅଛି ତାରେ
ଏ ମରଧାମେ କାସ ସର ସେ ?
ଅନଭୂତ
ବାଣ୍ଟିଲେ ହୋଇବ 'ଅନନ୍ଦ ?
କରେ ପାଉଛି ସେ ତା ସ୍କନ୍ଦ

---

୨ । କମଳାନନ୍ଦନ—ଲକ୍ଷ୍ମୀଙ୍କ ବରପୁତ୍ର; ଧନପତି—କୁବେର; ଗନ୍ଧେଶ୍ୱର—ଗନ୍ଧବୋଡ଼ ଫୁଲ; ବପୁ—ଦେହ; ପ୍ରୟାସ—ଅଭିଳାଷ ।

ଜାଣଇ ସେ ଶୋଭାର ସରଣୀ ଗମିବାର
ଫଳ ପ୍ରାପତ ଭୂମାନନ୍ଦ ସେ
ଶୋଭଜୀବୀ ।

୧୯୪୪ 

—୨୯—

# ଭାରତୀ ଆବାହନ ଗୀତ

ରାଗ—ଦକ୍ଷିଣ କାମୋଦୀ, ତାଳ ଅଠତାଳ
( ଶ୍ୟାମ ନାଗର ହେ ! ଏ ବେଶ ହୋଇବ ନାହିଁ—ବୃତ୍ତରେ )

ମାତଃ ! ଭାରତୀ ଗୋ ! ଏ ଦେଶେ କରୁଣା କର
ବଲ୍ଲକୀ କରେ ମା ! ତ୍ରିଦିବ ଧାମରୁ ମଧୁମାସେ ଅବତର । ଘୋଷା
ତୁମ୍ଭର କରୁଣା ହେବାରୁ ମା ! ଊଣା
ଉତ୍କଳ ମଙ୍ଗଳ ତାର
ଅବନତ ଅଙ୍ଗ ଯାଇଛି ଟି ଭାଙ୍ଗ
ହେମ-କଣ୍ଠ ଶିରର । ୧ ।
ସ୍ଫୂର୍ତ୍ତି କଣ୍ଠେ ତାର ଉପମା ଯାହାର
ନାହିଁ ସେ ଗୀତ ସମ୍ଭାର
ଜଗତେ ଅତୁଳା କୋଣାରକ-କଳା
ମନ୍ତ୍ର ଗୀତ କଳେବର । ୨ ।

୩ । ଭୂତି—ସଂପଦ; ସରଣୀ—ବାଟ; ଭୂମାନନ୍ଦ—ପ୍ରଚୁର ଶ୍ରେଷ୍ଠ ଆନନ୍ଦ ।

୧ । ହେମ—ସୁନା; ଚିତ୍ରୋତ୍ପଳା—ମହାନଦୀ (କଳେ ଚିତ୍ରୋତ୍ପଳା ଗଙ୍ଗା)

ମୂକଙ୍କୁ ବାଗ୍ମିଳ କରିବାର ବଳ
ବହେ ସ୍ୱପଞ୍ଚୀର ତାର
ମୃତ ସଞ୍ଜୀବନୀ ଉତ୍କଳ ଅବନୀ
କାନେ ଶୁଣାଅ ସତ୍ୱର ।୩।
ନବୀନ ଯୁଗରେ ବିଶ୍ୱ ଦରବାରେ
ଗରବେ ଟେକୁ ସେ ଶିର
ନବୀନ ତରଙ୍ଗେ ତୋଳି ନବରଙ୍ଗେ
ନାଚୁ ଶଯୋଫୂଲା-ନୀର ।୪।

୧୯୩୭

---

## ବଳଭଦ୍ର ଦେବ

( ରଂଗ ରସକୁଲ୍ୟା )

ବଳଭଦ୍ରଦେବ ବଡ଼ କୁମର !
ଶୋଭାଙ୍ଗୀ-ବଲ୍ଲଭ ହେ କବିବର !
ଅଲେକ୍ ଉତ୍କଳ-କବିତାକାଶ
ହୋଇଥିଲ ବାମଣ୍ଡାରେ ପ୍ରକାଶ
କାନ୍ଦଇ ଉତ୍କଳ ଭୂଇଁ ହେ !
ଅତର୍କିତେ ଅହା ଗଲ ବାଣୀସୁତେ
ଯାଇଥିଲେ ଅଗ୍ରୁଁ ଯଦ୍ୱୁଁ ହେ ।୧।

୧। ବଡ଼ କୁମାର—ବାମଣ୍ଡା ମଣ୍ଡନ ସାର୍ ସୁଢ଼ଳ ଦେବଙ୍କ ଦ୍ୱିତୀୟ ପୁତ୍ର ।

ଦୀନା ମାତୃଭାଷା ମନକୁ ଜାଣି
ସାରଦା ଅରାମୁଁ ଅଭି କେ ପୁଣି;
ଦିବ୍ୟ ସୁମନସ ତୋଳି ସାଦର
ନିପୁଣ ମାଳୀର ସମାନ ହାର
ଗୁନ୍ଥିବ ରଜନନ୍ଦନ ହେ !
ବିଳାସ ତଳପ ତୁଚ୍ଛ ମଣି କେହ୍ଣୁ
ପୂଜିବ ବାଣୀ ଚରଣ ହେ ? । ୨ ।

ତୁମ୍ଭ ସାରସ୍ୱତ କୁଞ୍ଜରେ ଲାଗି
କାଳକୀଟ ଦନ୍ତ ଯିବଟି ଭାଗି
ତୁମ୍ଭ କୃତ ସଙ୍ଗମୁକୁଟ ମୂଳେ
କେଣି ଧନ୍ୟ ନୃପେ ହୁଅନ୍ତେ ହେଲେ;
ଯଟଶା ଦେହରେ ବିରାଜ ହେ
ଶରଧା ସୁମନ ଅଞ୍ଜଳି ଦେଇଣ
ପୂଜିବୁଁ ପଯୁର ଅଜ ହେ । ୩ ।



---

୨ । ସାରଦା—ସରସ୍ୱତୀ; ଅରାମ—ବଗିଚା; ସୁମନସ—ଫୁଲ; ତଳ—ବିଛଣା ।

୩ । ସାରସ୍ୱତକୁଞ୍ଜ—କାବ୍ୟ କବିତା; କୁଞ୍ଜ—ଗ୍ରନ୍ଥାବଳୀ, କବିଙ୍କ ଗ୍ରନ୍ଥାବଳୀ ଗୋଟିଏ ବିଶାଳ ଗ୍ରନ୍ଥ (ନାମ—ବଳଭଦ୍ର ଗ୍ରନ୍ଥାବଳୀ) ।



—୮୧—

# ଅବନୀ ଶୋଭା

ରାଗ—କଲହଂସ କେଦାର

ଅଯୁତ ମଧୁଶିରୀ ତଳେ ଲେଟାଇ
ଅବନୀ-ଶୋଭା ଧନୀ ମଣ୍ଡିଛି ମହୀ,
ଅଛେ କମଳ ଦ୍ୱନ୍ଦ ରଙ୍ଗାଚରଣ
ସୁକୃତୀ ଯୁବା ମୌଳି ଯୋଗ୍ୟ ମଣ୍ଡନ ।୧।
ଯୁବା ହୃଦୟ ବ୍ୟାଧି ଉପଶମନେ
ଅଭିଳାଷୀ ବିଧାତା ସଦୟ ମନେ
ମଞ୍ଜୁଳ ବାର୍ବାନୀ ମଞ୍ଜୁଷା ସର
ଗଢିଛି ଉର ତାର ଭେଷଜେ ଭର ।୨।

---

ଅବନୀଶୋଭା—ଯେ ପୃଥିବୀର ସୌନ୍ଦର୍ଯ୍ୟ ସ୍ୱରୂପିଣୀ (ତୁଳନାକର—"କୁସୁମବତୀ ହୋଇ ଅବନୀ ଶୋଭା, ଢଳପ ତେଜ ତଳେ ହୋଇଛି ଉଭା—ଭଞ୍ଜ" )।

୧। ଅଯୁତ ମଧୁଶିରୀ—ଅସଂଖ୍ୟ ବସନ୍ତର ସଞ୍ଚିତ ଶୋଭା ସମ୍ଭାରକୁ ନିଜର ଗୋଡ଼ତଳେ ଗଡ଼ାଇ ଦେଇ ଅର୍ଥାତ ତାକୁ ପରାଜିତ କରି; କମଳଦ୍ୱନ୍ଦ—ପଦ୍ମଯୁଗଳ ( ତା ପଦ ଯୋଡ଼ିକ ଥଳ ଉପରେ ଦୁଇଟି ପଦ୍ମ ଉବୁଟିଲା ପରି ଦିଶୁଛି) ରଙ୍ଗା ଚରଣ—ଲାଲ ପଦ୍ମ ସମାନ ପାଦ, ଏ ଦୁଇଟି ଚରଣ ସୁକୃତୀ ଅର୍ଥାତ୍ ପୁଣ୍ୟବନ୍ତ ଯୁବାର ମୌଳି ଅର୍ଥାତ ମୁଣ୍ଡରେ ଲଗା ହେବାର ଯୋଗ୍ୟ ମଣ୍ଡନ ବା ଅଳଙ୍କାର ଅଟେ ।

୨। ଯୁବା ହୃଦୟର କାମନା ଜନିତ ବ୍ୟାଧି ବା ରୋଗର ଉପଶମନ ଅର୍ଥାତ ଆରୋଗ୍ୟ ଘଟାଇବାକୁ ଅଭିଳାଷୀ—ଇଚ୍ଛୁକ ବିଧାତା ଦୟା ପୂର୍ଣ୍ଣ ଚିତ୍ତରେ ତା ଉର ଅର୍ଥାତ୍ ଛାତିକୁ ଭେଷଜ—ଔଷଧରେ ଭର—ପୂର୍ଣ୍ଣକର ମଞ୍ଜୁଳ—ସୁନ୍ଦର ବାର୍ବାନୀ—ସୁନା ମଞ୍ଜୁଷା—ପେଡ଼ି କରି ଗଢ଼ିଛି ।

ଲ୍ଲଲଇ ତହିଁ ହେମ-ରତନ-ହାର
ହେମ ଘନେ କି ଥିର ତଡ଼ିତ ଗାର
ସେ ମଧୁ ବଢ଼ଶୀରେ ଦେବ ଜୀବନ
ମନାସି ହେଲେ ମୀନ ଦୁଏ ନୟନ ।୩।

୧୯୩୦



—୮୨—

## ଅଳସର ଦୁର୍ଦ୍ଦଶା

ରାଗ—ଶଙ୍କରାଭରଣ

ଶୁଖିଲା ପାଗଠା ଯାକ ଅଳସ ଝିଣ୍ଟିକା
ଗୀତ ଗାଇ ବୁଲିବାକୁ ଭଲ ତା ଜୀବିକା
ଏବେ ଆସିଲା ବରଷା
ସଞ୍ଚି ନାହିଁ ଅଗୁଁ କିଛୁ ତୁଚ୍ଛା ତାହା ବସା ।
କି କଲି କି କଲି ? ଅହା ବରଷା କାଳରେ
ନ ଖାଇ ମରିବା ଲେଖା ଥିଲା କପାଳରେ !
କ୍ଷୁଦ କଣିକାଏ ନାହିଁ
ଘରଅଡ଼ କଳମଣ୍ଡ ଯିବ ଅବା କାହିଁ ?
ବନ୍ଧୁ ପିମ୍ପୁଡ଼ିର କଥା ପଡ଼ିଲା ତା ମନେ
ଆଶା ବାନ୍ଧି ପାଶେ ତାର ଚଳିଲା ତକ୍ଷଣେ
ମୁଣ୍ଡ ନୁଆଇଁ ପ୍ରଣାମ
କରି କହେ "ବନ୍ଧୁବର ! ଅଛି ବଡ଼ କାମ ।"

---

୩ । ଲ୍ଲଲଇ—ଲମ୍ବି ରହିଛି, ହେମଘନ—ସୁନା ମେଘ; ତଡ଼ିତ—ବିଜୁଳି; ମଧୁ—ମଧୁର, ବଢ଼ଶୀ—ବନଶି କଣ୍ଟା, ମନାସି—ଇଚ୍ଛାକରି ।

ଦେଖୁଅଛି ହେଉଅଛୁ କି ଘୋର ବରଷା !
ତା ସଙ୍ଗକୁ ଏକାବେଳେ ତୁଚ୍ଛା ମୋହ ବସା,
ତୁମ୍ଭେ ସଞ୍ଚିଛ ବହୁତ
ଖାଦ୍ୟ କିଛି ଦିଅ ଧାର; ସୁଧର ସହୃତ
ବରଷାକାଳର ଅନ୍ତେ ଶୁଝିଦେବି ମୁହିଁ,
ଦେଖୁଛ ଦୁର୍ଦ୍ଦଶା ଦୟା ବହ ମୋହଠାଇଁ
ନ ବୁଡ଼ିବ ତୁମ୍ଭ ଧନ
ଚିରକାଳ ସୁମରିବି ତୁମ୍ଭ ବନ୍ଧୁପଣ ।
ମୁଣ୍ଡକୁ ହଲାଇ କହେ ପିମ୍ପୁଡ଼ି ହେ ଭାଇ !
'ଋଣୀ ଅବା ଋଣଦାତା କେବେଁ ହେବନାହିଁ'
ଏହା ମୋ ଗୁରୁବଚନ
ପ୍ରାଣ ଗଲେ କରି ନ ପାରଇଁ ମୁଁ ଲଂଘନ ।
ଶୁଖିଲା ପାଗରେ ତୁମ୍ଭେ କରୁଥିଲ କିସ ?
ଖାଦ୍ୟ ବୋହି ବୋହି ହେଲା ମୋ ଦେହ ପସର;
କରେ ଝିଣ୍ଟିକା ଉତ୍ତର
"କି କହିବି ଭାଗ୍ୟଦୋଷ ବନ୍ଧୁ ! ସେ ମୋହର ।
ଫୁଲଣା ମନରେ ଖାଲି ଗାଇଲଇଁ ଗୀତ
ଭାଲି ମୁଁ ନ ଥିଲି ହେବ ବୋଲି ଶୂନ୍ୟହାତ,"
କହେ ପିମ୍ପୁଡ଼ି "ଗାୟକ !
ଦର୍ଦ୍ଦିନରେ ନାଚ ଏବେ ଥେଇ ଥେଇ ଥାକ ।"

୧୯୩୯





# ଗୌରୀଶଙ୍କର ସ୍ମୃତି

କୁଟିଳ ପଡ଼ୋଶି ଯେବେ କୂଟଜାଲ ପାତି
ଓଡ଼ିଶା ଭାଷା ବିଲୋପେ ବଳାଇଲେ ମତି
ଲେଖନୀ-ଅସିରେ ବୀର ! କାଟି ସେ ବାଗୁରି
ବଞ୍ଚାଇଲ ଓଡ଼ିଶାର ବାଙ୍ମୟ ଡେଙ୍ଗୁରି ।୧।

ନୋହିଲା ରସନା ଛେଦ ଓଡ଼ିଆ ଜାତିର,
ଦାୟାଦ ସକଳେ ଆମ୍ଭେ ତୁମ୍ଭ ସୁକୃତିର !
ଯେ ପୀଠେ ମୁଖର ଆଜି ଜାତିର ଜୀବନ
ଏ ଦେଶକୁ ମହାମନା ! ତାହା ତୁମ୍ଭ ଦାନ ।୨।

---

୧ । କୁଟିଳ ପଡ଼ୋଶି—କେତେକ ପଦସ୍ଥ ବଙ୍ଗୀୟ ଓଡ଼ିଆ ଭାଷା ସ୍ୱତନ୍ତ୍ର ଭାଷା ନୁହେଁ, ବଙ୍ଗ ଭାଷାର ଉପଭାଷା ବୋଲି ରାଜଦରବାରରେ ଦର୍ଶାଇ ଓଡ଼ିଆ ଭାଷାକୁ ଲୋପ କରିଦେବାକୁ ଅଣ୍ଟା ଭିଡ଼ିଥିଲେ; ବାଗୁରି—ଜାଲ ।

୨ । ନୋହିଲା ରସନା ଛେଦ—ଭାଷା ଲୋପ ହୋଇ ପାରିଲା ନାହିଁ; ଦାୟାଦ—ଉତ୍ତରାଧିକାରୀ, ସୁକୃତି—ତୁମ୍ଭର ଏ ମହାକୀର୍ତ୍ତିର; ଯେ ପୀଠେ-କଟକର ଟାଉନ୍‌ହଲ୍‌—ଏହା ଓଡ଼ିଶାକୁ ମହାମନା ଗୌରୀଶଙ୍କରଙ୍କ ଦାନ, ନିଜ ହାତରୁ ଟଙ୍କା ଦେଇ ସେ ଏହା ଗଢ଼ିଥିଲେ ।

ଅସ ଅଭିବାରେ "ଭଞ୍ଜ"-କବିତାବିଳାସି !
ନବଯୁଗ-ଉଷା-ପ୍ରଭା "ଦୀପିକା" ପ୍ରକାଶି !
ଯାଉ ଅପସରି ଦେଶୁଁ ହୀନାନୁକରଣ
ହେଉ ସମୁଦିତ ଆତ୍ମ-ସମ୍ମାନ-ତପନ ।୩।

୧୯୩୬



---

୩ । ଭଞ୍ଜ କବିତା ବିଳାସୀ—"ଇନ୍ଦ୍ରଧନୁ" "ବିଜୁଳି" ଯୁଦ୍ଧରେ ସେ ଉପେନ୍ଦ୍ର ଭଞ୍ଜଙ୍କ ପକ୍ଷ ସମର୍ଥନ କରିଥିଲେ; "ଦୀପିକା"—ବିଖ୍ୟାତ "ଉତ୍କଳ ଦୀପିକା" କାଗଜର ସେ ପ୍ରତିଷ୍ଠାତା ଓ ଅମରଣ ସମ୍ପାଦକ ଥିଲେ ।



—୮—

# ଜୀବନର ଗୌରବ

( ଇଂରାଜ କବି ଲର୍ଡ୍ ବାଇରନ୍‌ଙ୍କ "ଅଲ୍ ଫର୍ ଲଭ୍"
କବିତାର ଛାୟା )

ଯଉବନ ଗଉରବ ସମବୃନ୍ତ
ସୁମନ ଅଟନ୍ତି ଦୁଇ
ଯଉବନ ଅନ୍ତେ ଝଟକାଇଲେ ଛତ
ଗଉରବ ତହିଁ କାହିଁ ? ।

ପଳିତ କେଶର ଅଭିଷେକୁଁ ବଡ଼
ଦଳିତର ଯଉବନ,
କେ ନୁହେ ସଂସାରେ ନରପତି ? ଧେନ
ଯଉବନ-ସିଂହାସନ ? ।

ଯେଉଁ ଲଲାଟରେ ଅଙ୍କି ସାରିଲଣି
ଜଇବ ରେଖା ତା ଜବା
ତୁହିନ-ମଣ୍ଡିତ ବି-ରସ ସୁମ ତା,
କଣ୍ଟେ ହେଲେହେଁ ଚୋରା ।

---

୧ । ସମବୃନ୍ତ ସୁମନ—ଏକା ଡେମ୍ଫରେ ଫୁଟିଥିବା ଦୁଇଫୁଲ [ଅର୍ଥାତ୍ ଯୌବନ ନ ଥିଲେ ପ୍ରକୃତ ଗୌରବ ନ ଥାଏ । ]

୨ । ପଳିତ କେଶ—ବାଳ ପାଚି ଯାଇଥିବା ବୁଢ଼ା ; ଧେନ—ଯୋଗ୍ୟ ।

୩ । ଜୈବରେଖା—ଜନ୍ମ ସୂଚକ ରେଖା ; ବିରସ—ଶୁଖିଲା, ସୁମ—ଫୁଲ ।

କଣ୍ଠରେ ତାଙ୍କି ସିତ-କେଶ-ରାଜି
ଫୁଲ୍‌ବାର ଗଉରବେ
ଲଲାଟ ପଟେ ମୋ ନ ଲେଖ ବିଧାତା !
ନ ସ୍ପୃହେଁ ତାହା ମୁଁ ଲଭେ ।

ଖ୍ୟାତ ଯେନ୍ନ ଯେବେ ଅରଜ ପାଇଲ୍
ଶୋଭାଙ୍ଗୀ-କରୁଣା-ଦୃଷ୍ଟି
ସାର୍ଥ ହେଲା ମୋର ପୁରୁଷାର୍ଥ ପୁଣି
ସାର୍ଥ ମୋ ପ୍ରଖ୍ୟାତ ସୃଷ୍ଟି ।

କରୁଣା-ଦୀପିତ ଶୋଭାଙ୍ଗୀର ନେତ୍ର
ମୋ ଗଉରବର ବାସ,
ବିଜୟ-ଟୀକା ମୋ କରୁଣାରେ ଦତ୍ତ
ତା ମନ୍ଦ ମଧୁର ହାସ ।

ଯଉବନର ଏ ବିଜୟ ବିଭୂତ,
ଜୀବନର ଗଉରବ,
ସିତ-କେଶ ନୃପ ମହାର୍ଘ ମୁକୁଟ
ସମାନ ନୋହେ ଯା ଲବ ।

୧୯୪୪



୪ । ସିତ—ଧଳା; ପାଚିଲା ।

୫ । ଶୋଭାଙ୍ଗୀ—ସୁନ୍ଦରୀ, ପ୍ରଖ୍ୟାତ ସୃଷ୍ଟି—ଯଶ ସମୃଦ୍ଧ ।
ମହାର୍ଘ—ମୂଲ୍ୟବାନ ।



—:*:—

# ଗମିବି ଘ୍ହା କାହାକୁ କରି ଆଶାବାଡି ?

( ରାଗ—ଶଙ୍କରାଭରଣ )

ପରଚିତ ପୁରାତନ ଅନେକ ବଦନ
ମମ ଏ ନୟନ ଏବେ ନ କରେ ଲୋକନ,
ନଭଲର ଦୀପ ସର
ଅପସାରିଲଣି କାଳ ଗୋଟି ଗୋଟି କର । ୧ ।

ହସରେ ଉଜ୍ଜଳ ପୁଣି କାନ୍ଦରେ ସଜଳ
ସରଳତା ଭରି ଥିବା ନୟନ-ଯୁଗଳ
କେତେ ଭଜାଲଣି ଲୟ !
ସୁମରି ଯା ଅନ୍ତରାତ୍ମା ଖେଦେ ମୋ ଅଥୟ । ୨ ।

ଶରଧା ଦୀପିତ କେତେ ନୟନର ଭାତ
ତମ ନାଶି ହୃଦେ ଯା ମୋ ଜାଳୁଥିଲା ବତ
ଏବେ ହେଲଣି ସପନ
ଅସାର ପତନ ଅନ୍ତେ ବୁଦ୍‌ବୁଦ ଯେସନ । ୩ ।

---

୧ । ନ କରେ ଲୋକନ—ଦେଖୁନାହିଁ ; ଅପସାରିଲଣି—ଦୂର କଲଣି ।

୨ । ଖେଦ—ଦୁଃଖ ।

୩ । ଦୀପିତ—ଆଲୋକିତ ; ଭାତ—ଆଲୋକ ; ଅସାର—ବର୍ଷା, ବୁଦ୍‌ବୁଦ—ପାଣିଫୋଟକା ।

ଶିଶିରେ ଝଡ଼ିଲା ସବୁ ତରୁର ପଲ୍ଲବ
ଅହା କରି ସାହା ହେବା ବାନ୍ଧବ ସରବ
ଭାଙ୍ଗି ଗଲେଣି ବାହାରି !
କାଳର ଆଦେଶେ ସେହିଁ ଝଞ୍ଜା ଅନୁସରି । ୪ ।

ମେଳଣର ଶେଷେ ଯଥା ମେଳଣି ପଡ଼ଇ
ଜୀବନ ଲଗରି ଅନ୍ତ ତଥା ନିଶ୍ଚିତ
ସଞ୍ଜ ଅସୁଅଛି ମାତ୍ର
ଗମିବି ରାହା କାହାକୁ କରି ଆଶା ବାଡ଼ି ? । ୫ ।

ଅଛ ମୋର ନୈଶମଣି ହେ ପୁରୁଷୋତ୍ତମ ;
ମାୟାଧର ହୃଦାନନ୍ଦ କି କରିବ ଭ୍ରମ ?
ମାୟା ପଟଳକୁ ଫେଇ
ଅଲେଖ ଧାମକୁ ବାଟ ନେବ ହେ କଢ଼ାଇ ।୬।

୧୯୫୪



୪ । ଶିଶିର — ଶୀତକାଳ; ଝଞ୍ଜା — ବାତ ।



— ୧୨ —

# ବିଶ୍ୱବୈଜ୍ଞାନିକ ସି. ଭି. ରମଣ

( ଶ୍ୟାମ ନାଗର ହେ—ବୃତ୍ତେ )

ବିଶ୍ୱ ପୂଜିତ ହେ ଏ ପୂଜା ରହିବ ମନେ
ହଜି ନ ଯିବ ଯେସନେ ସ୍ମୃତି ଯାର (ତବ)
ପୂଜନ ସ୍ମୃତି ଗହନେ । ଘୋଷା ।

ଅଙ୍କରେ ପଥରେ ବନ୍ଦାଣୀ ଏ ଜାତି
ଲଳିତ-କଳା-ରସିକ
କୋଟି ବର୍ଷପର୍ଯ୍ୟେ ଭଜନାହିଁ ଲକ୍ଷ୍ୟ
ରହିଛି ମଉଳି ଠେକ । ୧ ।

ବୋଇତ ବଣିକ ସାମୁଦ୍ର ସାମ୍ରାଜ୍ୟ
କାହାଣୀରେ ଅଛି ଆଜ,
ମେରୁ ହାଡ଼ କଳୁ ଅଛି ଯଥାପୂର୍ବ
ଯାଇ ନାହିଁ ମାଡ଼େ ଘୁଜ । ୨ ।

ହେ ବିଜ୍ଞାନ ! ଧେନ ପ୍ରଣତ ଅମ୍ବର,
ଦାରୁଣ ବିଦାୟ ବଥା;
ହୋଇବ ଝଂକୃତ କାଳେ କାଳେ କାନେ
ସୁଧା ମଖା ତୁମ୍ଭ କଥା । ୩ ।

ବିଜ୍ଞାନ ଦର୍ଶନ ସମନ୍ୱୟେ ଯେବେ
ଜଗତ ହୋଇବ ନୂଆ
ଅହେ ସୁଭବର ! କର ଶୁଭାଶିଷ
ବଡ଼ ହୋଇବ ଓଡ଼ିଆ । ୪ ।

୧୯୪୩

---

୦ । ଗହନ—ବନ ।
୨ । ସାମୁଦ୍ର ସାମ୍ରାଜ୍ୟ—ଓଡ଼ିଶାର ଦରିଆପାରି ଉପନିବେଶିକ ବସତି ।

—୭—

# ପ୍ରିୟାବିଚ୍ଛେଦ

( ଇଂରାଜ କବି ଏଚ୍, ଏଫ୍, ଲିଟ୍‌ଙ୍କ ଏ ଲଷ୍ଟ୍ ଲଭ୍
କବିତାର ଅନୁବାଦ )

ଚନ୍ଦ୍ରାଗ୍ରେ ମନୋରମ କାନ୍ତ ଶଶି-କଳା ସମ
ନୟନ ପୁରତେ ମମ ମୁଖ ତୋ ଦିଶେ,
ବେପଥୁ ଚଞ୍ଚେ ସରଜ ବୀଣା-ଜଣା ବାଣୀରାଜି
ହୃଦୟର ରାଣି ! ଆଜି କାନେ ମୋ ପଶେ
ତୋ ସଙ୍ଗତ-ଜାତ ସମ୍ପଦ
ଅତୀତ ଅଛଇ ଭସି ଅବଶେଷ ତ ନ ରଖି
ସ୍ମରଣ ସଙ୍ଗତେ ସଖି ! ସାଧୁଛି ବାଦ ।
ନୟନୁଁ ଲୋତକ ଝରେ, ନାସାରୁ ଶ୍ୱାସ ପ୍ରସରେ,
ନାହୁଁ ତୁ ଆଜି ପାଶରେ ମୋ ଦୁଃଖ ସାଥି !
ଦେଖିଣ ମୋର ବିକଳ ହୋଇବ କେ ଶୋକାକୁଳ ?
ମୋ ଖେଦ ସିନ୍ଧୁ ଅଥଳ ଅସର ରାତି ?
ଭାବେ ତୋର ରହିଛି ମଣ୍ଡି
ତହୁଁ ବଡ଼ ସୁଖ ନାହିଁ ପରମ ଆଶ୍ୱାସ ତହିଁ
ମୋ ଧ୍ରୁବତାରା ମଣଇଁ ତୋରେ ମୁଁ ଆଜି ।

---

୧ । ଚନ୍ଦ୍ରାଗ୍ରେ ମନୋରମ — ମୁଖ ଉପରେ ଚନ୍ଦ୍ରାର ଛାୟା ପଡ଼ି ତାହା ସୁନ୍ଦର ଦିଶୁଥିଲା, କାନ୍ତ — ମନୋହର; ବେପଥୁ — କମ୍ପ, ସ୍ପନ୍ଦନ; ସଙ୍ଗତି — ସଙ୍ଗ, ଅବଶେଷ — ବଳକା, ସ୍ମରଣ — ସ୍ମୃତି ।

୨ । ପ୍ରସରେ — ବାହାରେ ।

ଦାରୁଣ ଶୋକ ଭିଦୁର ନୋହିବାର ଚୂରମାର
ହୃଦୟ ଅଛୁ ସଂସାର ଭିତରେ ରହି,
ସେ କୁସୁମର ମୁକୁର ମଣିଇଁ ମୁଁ ଚିତ୍ତ ମୋର
ବିଷମ ବିରହ ତୋର ସହିଇ ସେହି,
ଜଳୁଛି ମୋ ପରାଣଦୀପ
ତଇଳ ସମ ତୁ ଯାର ଥିଲୁ ଅରେ ରମାବର !
ନ ଲଭି ବିନ୍ଦୁ ତୋହର ଆଶୁ ନିର୍ବାପ ।

ଆସିବ ଦିନ ରମ୍ଭୋରୁ ! ସୁଖଦୁଃଖ ଅତୀତରୁ
ହୋଇବ ଅତୁର ଗରୁ ନ ଥିଲି ଜାଣି
ସାଥୀ ମୋର ଅହର୍ନିଶ ତୁ ପୁଣି ନ ଥିବୁ ପାଶ
ଛିନ୍ନ ହେବ ଆଶା ପାଶ । ସେ କୁଶପାଣି
ବାହିବ ବିଚିବ ଭିଆଣ
ମୁଁ ରହିବ ଭବପୁରେ, ଭବ ଯବନିକା ପାରେ
ତୁ ରହିବୁ ଆହା ଅରେ ଜୀବ ଜୀବନ !

---

୩। ଭିଦୁର — ବଜ୍ର, ଆଶୁ—ତୁରନ୍ତ; ନିର୍ବାପ — ନିଭିଯିବା ।]

୪। ରମ୍ଭୋରୁ--କଦଳୀଗଛର ଗଡ଼ଣପରି ଉରୁର ଗଡ଼ଣ ଯାହାର; କୁଶପାଣି — ବିଧାତା ।

ଅମ୍ଭ ହୃଦୟର ମେଳ ଛେଦିବା ପାଇଁ କେବଳ
ମରଣର କରବାଳ ଜାଣ ମୋ ଧନ !
ଏକା ବସି ତୋତେ ଶୋଚି କାନ୍ଦିବା ଲୋତକ ମୁଛି
ନୁହଇ ତ ତେତେ ଶୁଚି, ଯେତେ ଶୟନ
ଭସ୍ମ ଆସ୍ତରଣେ ତୋ ପାଶେ;
ଯହିଁ ତୁ ଶୋଭାବଲ୍ଲରୀ ! ସକଳ ଶୋଭା ସଂହରି
ମଜ୍ଜନବ୍ରତ ଆଚରେ ଅଛୁ ରଭସେ ।

ତୁ ମୋର ଯେତେ ଦୋସର ତାକୁ ରକ୍ଷା କରିବାର
ଶକତ ମରଣ ଛାର ନାହିଁରେ ବନ୍ଧୁ
ସ୍ମରଣ ଥାଉଁ ସଜନ କିଏ ସେ ଏତେ ଭାଜନ
ତୋରେ ମୋରେ ଭିନ୍ନାଭିନ୍ନ କରିବ ସନ୍ଧୁ !
ଝାଉଁଳା ମୋ ହୃଦ ବଲ୍ଲରୀ
ତୋ ସ୍ମୃତିକି ରକ୍ଷା କରି ଅଛଇ ନିୟତ ଘେରି,
ଭେଟ ଯାଏଁ ସାଥେ ତୋର ଥିବ ସେପରି ।

୧୯୩୭.



୫। ଶୁଚି—ଶୁଚିକର; ଭସ୍ମଆସ୍ତରଣ — ପାଉଁଶ ଶେଯ, ସଂହରି—ଅପସାରିତ କରି; ରଭସେ — କଉତୁକରେ ।

୬। ଦୋସର — ପ୍ରିୟ, ଆପଣାର; ସ୍ମରଣ — ସ୍ମୃତି, ଭାଜନ — ଯୋଗ୍ୟ ।



—୮—

## ଶଶିଭୂଷଣ ରାୟ

( ରାଗ କଳହଂସ କେଦାର )

ଦେନ ଶ୍ରଦ୍ଧା ଭକତ କୁସୁମାଞ୍ଜଳି
ପୂଜ୍ୟ ପୂଜା ଉତ୍ସବେ ଆଜ ଉତ୍କଳୀ !
ଶଶିଭୂଷଣ ରାଧାନାଥ-ତନୁଜ
ଜାତର ପୂଜା ଅର୍ଘ୍ୟ ଦେନାବେ ଅଜ । ୧ ।

ଏ ସମାଜ-ଭବନ-ଗଠନ ପାଇଁ
ଖଟିଲେ ଯେ ରକତ ପାଣି ଫଟାଇ
ରକ୍ତ ମାଂସେ ଯାହାଙ୍କ ସାହିତ୍ୟ ସେବା
ମିଶିଛି ପଟାନ୍ତର କେ ତାଙ୍କ ଅବା ? । ୨ ।

କମଳା-ଦତ୍ତ-ସୌଧୁଁ ଚିତ୍ତ ସଂହର
ନିଭୃତ ନିଳୟେ ଯେ ସଦା ବିହାରୀ,
ଜରା ପାରିଲା ନାହିଁ କରି ଶିଥିଳ
ଚୋଟମୀ ଯାହାଙ୍କର ସେ ତାଙ୍କ ତୁଲ । ୩ ।

---

ଶ୍ରୀରାମଚନ୍ଦ୍ର ଭବନରେ ଶ୍ରୀଶଶିଭୂଷଣ ରାୟଙ୍କ ପ୍ରତିକୃତି ଉନ୍ମୋଚନ ଉପଲକ୍ଷେ ରଚିତ ।

୧ । ରାଧାନାଥ—କବିବର ରାଧାନାଥ; ତନୁଜ—ପୁତ୍ର; ଏ ସମାଜ—ଉତ୍କଳ ସାହିତ୍ୟ ସମାଜ ।

୩ । କମଳା-ଦତ୍ତ—ସୌଧୁଁ—ମାଆ ଲକ୍ଷ୍ମୀଙ୍କ ପ୍ରସାଦରୁ ପାଇଥିବା ପୈତୃକ ପକ୍‌କାଘର; ଚିତ୍ତସଂହରି—ମନ କାଢିନେଇ; ମୋହ ତୁଟାଇ; ନିଭୃତ ନିଳୟ—ଅଠଗଡ଼ ଧବଳେଶ୍ୱରଙ୍କ ନିକଟରେ ସାଧକଙ୍କର ସାଧନା ମନ୍ଦିର ।

ସ୍ତୂପୀକୃତ ଯାହାଙ୍କ ସାହିତ୍ୟ ଶ୍ରମ
ଉତ୍କଳ ତମସକୁ ଆଲୋକ ଧାମ,
ହୃଦୟବତ୍ତା ତଥା ପିତୃଭକତ
ମୁକର ଏ ଦେଶର ଆଦର୍ଶ ଭୂତ । ୪ ।

ସାର୍ଦ୍ଧକୋଟି ଉତ୍କଳୀ ହୃଦ-ମନ୍ଦର
ଶଶିଭୂଷଣ ମୂର୍ତ୍ତି ବହେ ରୁଚିର
ସେ ଦୀପ୍ତ ମୂରତର ପ୍ରତୀକ ସର୍
ରାଜୁ ଏଥି ଏ ପ୍ରତକୃତ ତାଙ୍କର । ୫ ।

୧୯୩୯



୪ । ସ୍ତୂପୀକୃତ ତାହାଙ୍କ ସାହିତ୍ୟ ଶ୍ରମ—ଶଶିଭୂଷଣ ବହୁତ ଗଦ୍ୟଗ୍ରନ୍ଥ ଲେଖି ଅଛନ୍ତି; ଅଧିକାଂଶ ଅପ୍ରକାଶିତ, ମୁକର—ନଷ୍ଟସ୍ଥ ଭୂତ-ଫପଦ, ରୁଚିର—ସୁନ୍ଦର; ପ୍ରତୀକ—ସନ୍ତକ, ପ୍ରତକୃତ—ଫଟୋ ।



—୮୯—

# ମୋ ଶରସମାଧି ହେଉ ଉରସ ତୋର

[ ଇଂରାଜ କବି ଶେଲିଙ୍କ "ଇଣ୍ଡିଅନ ସିରେନେଡ୍"
କବିତାର ଅନୁବାଦ ]

ସ୍ୱପ୍ନେ ତୋ ରୂପ ବଲ୍ଲରୀ— ଜମନ ନୟନେ ହେରି
ଅସିନ୍ତୁ ସୁଷୁପ୍ତି ହାରି, ନିଶୀଥ ଘୋର;
ବହଇ ମନ୍ଦେ ମରୁତ ବିୟତେ ତାରକାବ୍ରାତ,
ଜଳନ୍ତ ପ୍ରଦୀପବତ କାନ୍ତି-ଭାସ୍ୱର,
ତୋ କକ୍ଷର ଗବାକ୍ଷ ତଳେ
ଦେଖି ମୁଁ ଯେ ଉପଗତ ଯନ୍ତ୍ର ଚାଳିତର ବତ
ସଖି ! ତୋ ଶୋଭା-ଉନ୍ମୁଖ ଭାବନା ବଳେ ।

ନବେ ଭ୍ରମୁଁ ଗୀତତାନ ହୋଇଣ ହୃତ ଚେତନ
ତଟିନୀ-କୃଷ୍ଣ ବଗନ ଉରସେ ଢଳେ
ସପନେ ଚିତ୍ରା ମଧୁର ମିଳାଇଲା ପରକାର
ସୁରଭି ହୁଏ ଚମ୍ପାର ଭ୍ରଷ୍ଟ ଅନିଳେ,
ବିରହିଣୀ ବିହଗୀ ଖେଦ
ହୃତ ଯେସନ୍ତେ ଚିତ୍ତେ ତାର ଉରେ ତୋର ତେସନ୍ତେ ମୋର !
ଲୀନ ହେବା ଇଚ୍ଛା ମୋର ନ ରଖି ଭେଦ ।

---

୧ । ବଲ୍ଲରୀ — ଲତା, ସୁଷୁପ୍ତି -- ନିଦ; ବିୟତ — ଆକାଶ; ବ୍ରାତ — ସମୂହ;
ଭାସ୍ୱର — ଉଜ୍ଜ୍ୱଳ ।

୨ । ତଟିନୀ — ନଈ; ତମସାଚ୍ଛନ୍ନ — ଅନ୍ଧାର; ଉରସ --- ଛାତି; ଚମ୍ପା —
ଚମ୍ପାଫୁଲ, ହେମଗଉରୀ --- ସୁନା ବରନା ।

ତୋ ଲକ୍ଷ ଲହରୀ ଫେଣ ଛୁଇଁରୁ ମୋରେ ଘୋଟାଅ
ଚେତନା ମୋର ଲଗାଅ, ହେଲି ଅବଶ;
ନୟନ ପରେ, ଅଧରେ, ବନ୍ଧୁ ରେ ! ପ୍ରୀତି ସୁଧାରେ
ଚୁମ୍ବନ-ଆସାର-ଧାରେ ବେଗେ ବରଷ,
ହୃଦେ ଧର ଅଭିନ୍ନ କର
ଛାତିରୁ ବେପଥୁ ଯାଉ ଗଣ୍ଡୁଁ କାଳିମା ଉଭାଉ
ମୋ ଚିର ସମାଧି ହେଉ ତିରସ ତୋର ।

୧୯୪୪



୩ । ଆସାର – ଆସରା; ବେପଥୁ – କମ୍ପ ।



—୯୦—

# ଭିକ ନ ମିଳିଲା ଆଉ

( ରାଗ—ଶଙ୍କରାଭରଣ )

ବନାକୁ ଥାଆନ୍ତି ପୋଷି ଭିକ ମାଗି ମାଗି
ବୋଉ ତାକୁ ଦେଲା ବାନ୍ଧି ଅଠଣୀଟା ଲାଗି,
କିଣିନେଲା ମାହୁଅଳି
କଦର୍ଥନା ହୋଇ ବୃଥା ପାରିଲ୍ ବୋବାଳି ।୧।

ସରିଛି ଅଠଣୀ, ବୋଉ ପଡିଅଛି ଜରେ
ବାଲବାଲଉଛି "ବନା ! ଆ ଆ ବାପ ଥରେ"
ହାତ ଉପରକୁ ଟେକେ
କହେ "କରିବଣି ଭୋକ ଖାଆ ଦୁଧ ଟୋକେ" ।୨।

ଗଛମୂଳେ ଛନ୍ତି ଯେଉଁ ପଡ଼ୋଶି ଭିକାରି
କହୁଛନ୍ତି "ବୋଉ ତୋର ଯିବ ଲୋ ବାହାରି ।"
କଣ୍ଠେ ନ ଗଳଇ ପାଣି
ତାଳପା ଶ୍ୱାଙ୍କ ଥଣ୍ଡା ହୋଇ ଆସିଲାଣି ।୩।

ଲଢ଼େଇରେ ମଲା ବାପ ରେଙ୍ଗାମ ସହରେ
ଚକି କରି ଦାଦା ଖୁଡ଼ୀ ଦିନ ଦି ପହରେ
ଗାଆଁ ଲୋକଙ୍କୁ ମିଳାଇ
ଅନ୍ଧ ଛନାଜଣେ ଦେଲେ ଘରୁ ଘଉଡାଇ ।୪।

ଚାଲିଗଲାଁ ଯେତେ ଦିନ ମିଳୁଥିଲା ଭିକ
ବୋଉ ଥନ ଖାଏ ବନା ନ ଜାଣଇ ଭୋକ
ଭିକ ନ ମିଳିଲା ଆଉ
ଶୁଖିଲା ବୋଉର ଥନ, ବନା କାଉ କାଉ ।୫।

ଅଠଦିନ ବୋଉ ଦେଖି ନ ଥିଲା ଯେ ଦାନା
ଶୁବଦିନ ଉପାସରେ ଝାଉଁଳିଲା ବନା
ମୁହିଁ ତୁଚ୍ଛା ପାଣି ପିଇ
ଫେରୁଥିଲି ଖାଲି ହାତେ ଭିକ ମାଗି ଯାଇ ।୭।

ବନା ଗଲା, ବୋଉ ଯିବ, ଯାଇଥିଲା ବାପ
ମୁଁ ଅଭାଗୀ ଥିବି ଜୀଇ ପାଇଛି ତା ଶାପ
ଯାଚୁଅଛ ପେଟେ ଭାତ
ଠେକିବାକୁ ଶୁଣ୍ଡା କାହୁଁ ଚଳିବ ମୋ ହାତ ? ।୭।

ସନ୍ନିପାତେ ବୋଉ ଦେହୁଁ ବହୁଅଛି ପାଣି
ସେକିବାକୁ ନାହିଁ ଜାଳ; ଶୁଣିଲି କାହାଣୀ
କାଠ ବଡ଼ାଟିଏ ଦିଅ
ନଈବାଲି ଯେତେ ତେତେ ଦିନ ଜୀଇଥାଅ ।୮।

ଏହି ଚୂନପିଣ୍ଡା ଯାଙ୍କ, ଶୁଙ୍କର ଲଗାଇ
ଦୁଅର ମୁହଁରୁ ମୋତେ ଦେଲେ ଘଉଡ଼ାଇ
କହି ନାନା କଟୁବାଣୀ
ଖାଇଯିବ ପିଲା, ମୁହିଁ କୁଅଢ଼େ ଡାହାଣୀ ! ।୯।

ଚୂନ ପିଣ୍ଡା ଥିଲା ଅମ, ଥିଲି ଅଳଅଳ
ଅପବାଦ ଶୁଣାଉଛି ମୋ ପୋଡ଼ା କପାଳ,
ଦେଲି କାଠ । ଯାଏଁ ମୁହିଁ
ପହଞ୍ଚିଲା ବେଳକୁ ମୋ ବୋଉ ଥାଉ ଜୀଇ ।୧୦।

୧୯୪୩



—୯୧—

# ଚିନ୍ତାମଣି ମହାନ୍ତି

( ଧୀରେ ସଧା କର ଧର ବୃନ୍ଦରେ )

ଚିନ୍ତାମଣି ! ସାଧନାର ପିରାମିଡ଼ ରଚିଛ ,
ଅପଘନେ ଭାରତୀଙ୍କ ରତ୍ନରାଜି ଖଚିଛ
ସୁଧୀ ହେ !
ଅମର-ଭୁବ ଅମ୍ଭପାଇଁ ସଂଚଛି
ମରନାହିଁ ମରନାହିଁ ହୃଦେ ଅମୃ ବଂଚଛି ।୧।
ବ୍ୟାଧି ତୁଷାନଳେ ଜଳି ସୁବାସ ବିତରିଛ
ତପସ୍ୟାର ଧନ ଦେଇ ମାଆ ଦୈନ୍ୟ ହରିଛ
ସୁଧୀ ହେ !
ଭାସ୍ୱର ଅଭ୍ର ମାଆ ଭାଲେ ଭରିଛ
ବାଣୀ-ଅରଚନେ ପଳ ପଳ ହୋଇ ସରିଛ । ୨ ।

୧୯୪୩



୧ । ପିରାମିଡ଼—ମିଶର ଦେଶର ରାଜାମାନଙ୍କର ସମାଧି ଉପରେ ଗଠିତ ବିରାଟ ସ୍ତୂପ—ବିରାଟତା ନିମନ୍ତେ ଏ ସବୁ ପ୍ରସିଦ୍ଧ; ଅପଘନ—ଶରୀର ଭୁବ—ହପଦ ।

୨ । ଭାସ୍ୱର—ସମୁଜ୍ଜ୍ୱଳ; ଭାଲ—କପାଳ; ପଳ ପଳ ହୋଇ—ଟିକି ଟିକି ହୋଇ । ସରିଛ—ନିଜକୁ କ୍ଷୟ କରିଛ ।



—୯୨—

# କଳାକମ୍ର ଉତ୍କଳ

ରାଗ—କାମୋଦୀ

( ଭଞ୍ଜବୀରଙ୍କ "ଦେଖି ନବ କଳିକା" ବୃତ୍ତରେ )

କଳା-କମ୍ର ଉତ୍କଳ ମାନସ-ଶତଦଳ-
ଆସନ ପାଉ ମା ଭାରତୀ !
କରଇ ଆବାହନ ଅବତର ବାହନ
ବିରଚ ତହିଁ ମା ବସତି ହେ
ବୀଣାପାଣି !
ମୂର୍ଚ୍ଛନା ତୋଳ ଆଜି ବାରେ
ବାଜୁ ବିପଞ୍ଚୀ ଧାଙ୍କାରେ !
ମଞ୍ଜୁଳ ବିମୋହନ କବିତା କଞ୍ଜବନ
ଫୁଲ୍ଲ ଭ୍ରସଳ-ମାଳିକାରେ ହେ
ବୀଣାପାଣି !
ବଟାଳୀରେ ପଥରେ ଲେଖନୀରେ ଅକ୍ଷରେ
ବିରଚି କଳାର ମନ୍ଦର
ଗଢିଲୁ ଏହୁ ଜାତି ତେଣୁ ଆଜି ଅଖ୍ୟାତି
ହୋଇଛୁ ଶେଲ ହୃଦେ ତାର ହେ
ବାଗୀଶ୍ୱର !

୧ । କଳାକମ୍ର—କଳାଦ୍ୱାରା କମ୍ର ବା କମନୀୟ, ଧାଙ୍କାରେ—ଶୀଘ୍ର, ମଞ୍ଜୁଳ—ମନୋହର କଞ୍ଜବନ—ପଦ୍ମବନ, ଭ୍ରସଳ—ଭ୍ରମର ।
୨ । ଶେଲ—ତୀକ୍ଷ୍ଣ ଅସ୍ତ୍ର ବିଶେଷ; ବାଗୀଶ୍ୱରୀ—ସରସ୍ୱତୀ ।

ସମ୍ମୁଖ ତା କଳା ବିପଣୀ
ହୋଇ ପ୍ରସନ୍ନା କର ପୁଣି
ବୀଣା, ତୂଳୀ, ବଟାଳୀ, ଲେଖନୀ ଶକ୍ତିଶାଳୀ
କରେ ମୋଦରେ ଧରୁ ଧନ୍ୟ ହେ
ବାଗୀଶ୍ୱରୀ !

କୀର୍ତ୍ତି-ମୟୂଖ ରାଶି ଦଶଦିଗ ଉଦ୍ଭାସି
ଉତ୍କଳ ନାମ କରୁ ସାର୍ଥ
ସତ୍ୟ, ଶିବ, ସୁନ୍ଦର କଳାଶିଳ୍ପି ବୃନ୍ଦର
ହେଉ ଏକୈବ ପରମାର୍ଥ ହେ
ମା ଭାରତ ?
ଶୋଭନ-ଜୀବନ-ସରିତ
ହେଉ ଏ ଦେଶେ ପ୍ରବାହିତ
ରଙ୍ଗ ରାଜୀବ ସବୁ କରୁଣା ମା ! ତୁମ୍ଭର
ଫୁଟୁ ଚହ୍ଲାଁରେ ଅବିରତ ହେ
ମା ଭାରତ !

୧୯୪୩



୩। ମୟୂଖ—କିରଣ; ଉଦ୍ଭାସି—ଆଲୋକିତ କରି; ଶୋଭନ—ମନୋଜ୍ଞ।



—୯୩—

# ରାଜକିଶୋର ପାଖରୁ ମାଧୁରୀ

( କୃଷ୍ଣ ନାମ ଅଜଠାରୁ ମୋ ଶ୍ରବଣେ
ନ ଶୁଣାଇବଟି କେହ୍ନ—ବୃନ୍ଦରେ )

ଲ୍ ୀବଣୀ ପ୍ରତିମା ଅଟେ ଶୋଭାସୀମା
ବୋଲି ଥାଅ ବନ୍ଧୁ ! ଡାକ ହେ
ଅନ ାଳ ଜଳାଇ ଫିଙ୍ଗ ମୋରେ ଛାଡ଼ି
କ ଅପରାଧ ପାଇଁ କ ହେ,
ଅହେ 'ମାଧୁରୀ'—ଜୀବନ
ପିଣ୍ଡ ରହେ କ ଗଲେ ପରାଣ ହେ ? । ୧ ।

ପ୍ରେମ ବ ବିରାଗୀ ହେବ ଯାହା ଲାଗି
ଦେବ ତାହାକୁ କାହାକୁ
ସେ ପର ୍ ନ୍ଦିରର ଦାସୀ ଚରଣର
ଅଂଶା ତା ତୁମ୍ଭ ବାହାକୁ ହେ
ବେ କ ତା ପରାଣ ବଲ୍ଲରୀ
ସମ୍ଭାଳ ୀବ ମହୀରୁହ ସବ ହେ ? । ୨ ।

---

୧ । ଲବଣୀ ପ୍ରତିମା—ଲ'ହୁଣୀ ପରି କୋମଳା; ଶୋଭାସୀମା—ସୌନ୍ଦର୍ଯ୍ୟର ଶେଷସୀମା ।
୨ । ବଲ୍ଲରୀ—ଲତା, ମହୀରୁହ—ବୃକ୍ଷ ।

ବିବାହରେ ଯୋଗ     ନୋହିଲେ କି ହେବ ?
ମାଧୁରୀ ହୋଇବ ସୁଖୀ ହେ
ଧନେଶ ଭବନ     ଥରେକ ମାତର
ବଦନ ଚୁମ୍ବ ନରେଖି ହେ
ଅଭାଜନା ସେ ଦୁଃଖିନୀ
ତୁମ୍ଭେ ତାର କୋହିନୂର ମଣି ହେ ।୩।

ଜନନୀ ତୁମ୍ଭର     ହେଲେ ଦେହାନ୍ତର
ସେହୁ ଦନୁଁ ମିଳନର ହେ
ଆଶାକୁ ବରଜି     ନିରାଶାକୁ ଭଜି
ଉଶ୍ୱାସ ଭବ କରି ଅନ୍ତର ହେ
ଦାସୀ ପଦ ଅଙ୍ଗୀ କରି
କିଆଁ ହେବ ତେ ଉହୁଁ ଉଗାର ହେ ? ।୪।

ରସଲେଖା ଯେନ     ପୁହାଅ ରଜନୀ
ବେଦୀର ତସ ହେଉ ସଖୀ ହେ
ଜନକବଚନ     କର ନାହିଁ ଆନ
ହେଲେ ମୁଁ ହୁଏ ନିର୍ମାଣୀ ହେ
ଭାବମୁକୁତାର ହାର
ବନ୍ଧୁ ! ହେଉ କନ୍ୟାସଜ ମୋର ହେ ।୫।

---

୩। କୋହିନୂର ମଣି—ପୃଥିବୀର ସବୁଠୁ ବଡ଼ ଓ ମୂଲ୍ୟବାନ୍ ହୀରାର ନାମ କୋହିନୂର ।

୪। ଦେହାନ୍ତର—ମୃତ; ଉଶ୍ୱାସ—ହାଲୁକା; ଅନ୍ତର—ହୃଦୟ; ଭବ—ପ୍ରୀତି; କନ୍ୟାସଜ—ବିଭା ହେବାକୁ ଯାଉଥିବା କନ୍ୟାର ଅଳଙ୍କାର ଆଦି ଭୂଷଣ ।

ସାପ କାମୁଡ଼ିଲା ପରାଣ ନ ଗଲା
ଗାରଡ଼ିଆ ତୁମ୍ଭେ ହୋଇ ହେ
କାନ ମୋ ଫୁଙ୍କିଲ ପ୍ରାଣ ବଞ୍ଚାଇଲ
ପରଶ ଭୁଲା ନ ଯାଇ ହେ
ବୋଲ ଭୃତିଲା ମୋହର
ମାଧୁରୀକି ମୁଁ ଦେବି ବଜର ହେ । ୬ ।

ଗଣ୍ଡ ମୋ ସୁରଙ୍ଗ ପଡ଼ିଥିଲା ରଙ୍ଗ
ଅଜନମ୍ଭୁଁ ମୁଁ ଅନ୍ତରେ
ଫୁଲ ଚନ୍ଦନରେ ପୂଜିଲି ଆଦରେ
ଯାହାଙ୍କୁ ସେ ମୋ ହାତରେ ହେ;
ମୋତେ ଦେଲେ ଆସି ବର
କଣି ନେଇ ଜନମ ଅନ୍ତର ହେ ।୭।

ସେ ଦିନୁ ଗଲେ ମୁଁ [ସିରସୀ କୂଳକୁ
ଅସ୍ତୁଁ ଯାଇଥାଏ ତହିଁ
ଗଜରା ହାରେକ ତୁଠରେ ପକାଇ
ବସ ଦୂରେ ପଥ ଚାହିଁ ହେ
ମୁହିଁ ଫେରେଁ ପାଣି ନେଇ
ଫୁଲ ହାରକୁ ଚାହିଁ ନ ଚାହିଁ ହେ ।୮।

୬ । ଗାରଡ଼ିଆ—ସାପମନ୍ତ୍ର ଜାଣିଥିବା ଲୋକ; ପରଶ ଭୁଲା ନ ଯାଇ—ତେତେବେଳେ ତୁମ୍ଭ ମୁହିଁ ମୋ ମୁହଁକୁ ଛୁଆଁଇବା କଥା ।

୭ । ଗଣ୍ଡ—ଗାଲ; ସୁରଙ୍ଗ—ଉତ୍କୃଷ୍ଟ ବର୍ଣ୍ଣ ବିଶିଷ୍ଟ; ରଙ୍ଗ—ଲାଲ ।

ତୁଠେ ଯେ ଯାଅନ୍ତି ଭେଦି ନ ଜାଣନ୍ତି
ବାଗୁରି ପାତ ତା ପାଇଁ ହେ
ମାଧୁରୀ ଭୁଲଇ ହୋଇ ଅଛ ବାଇ
ଧରି କି ସେ ଦେଇ ନାହିଁ ହେ
ମନ ଉତ୍କଣ୍ଠା ତାହାର
କହୁଁ ପିନ୍ଧିବାକୁ ପରି ହାର ହେ ।।୯।

ଏକୋଇଶ ହାର ହେଲା ନାରଖାର
ଧନ ଏକୋଇଶ ଗତ ହେ
ଖଣ୍ଡ ବଙ୍କା ତୁଣ୍ଡେ କହି ଦେଲ୍ ଗୁଣ୍ଡେ
ପୂରିଲା ସନ୍ଧ୍ୟା । ବରତରେ
ରହି ଲବଣୀ ପିତୁଳା ।
ଅଙ୍ଗ ହାରେ ମଣ୍ଡି ଧଇଁ ଗଲା ରେ ।୧୦।

ଲାଜ ମୋ ଭିଡ଼ିଲା "ତୁରିତେ ତୁ ପଳା"
ପୀରତି ଛନ୍ଦକ ପଦ
ଲାଜ କଲା ମନା "ପାଛି ତୁ ଫେରନା"
ପୀରତି କଲା ଗଦ୍‌ଗଦ ହେ
"ଠାଣି ହୁଅ" ଭାଷୁଁ ଲାଜ
ପ୍ରୀତି ଭାଷେ "ସେ ପରି ତୋ ରାଜ ହେ" ।୧୧।

---

୯ । ବାଗୁରି—ଜାଲ; ଉତ୍କଣ୍ଠ—ଉତ୍ସୁକ; ଅଗ୍ରହ ।

୧୦ । ଲଗି ମୋ ଭିଡ଼ିଲା—ଏ ପଦରେ ମନରେ ଲାଜ ଓ ପ୍ରୀତିର ଠେଲା-ଠେଲି ବର୍ଣ୍ଣନା କରି ଯାଇଛି । ବରତ—ତୋତେ ଲାଭ କରିବା ପାଇଁ କରି ଯାଉଥିବା ବ୍ରତ ।

ପିନ୍ଧାଇଣ ମାଳ ଅଙ୍ଗ ଛଳ ଛଳ
କର କହିଲ "ସୁନ୍ଦର ରେ !
ଏଢୋଇଣ ମାଳ କଲୁ ତୁ ବଫଳ
କେଉଁ ଅପରାଧୁଁ ମୋର ରେ"
ମୁଁ ଭାଷିଲି "ବରତର
ଝାଣ ପରଖୁ ଥିଲି ମାତର ହେ" ।୧୨।

କହିଲ "ଅଜାଠୁଁ ଭଲାଭଲ ନାହିଁ
ତୁ ମୋହର ମୁଁ ତୋହର ରେ
ଏ କୁସୁମ ଯାଙ୍କ ଅଟଇ ଶାୟକ
ମନାସି ତାଙ୍କୁ ମନର ରେ
ତୋରେ କହିଲି ରୂପସି !
ତୁ ମୋ ମାନସ ଆକାଶ ଶଶୀ ରେ ।୧୩।

ହେଲା ଘରପୋଡ଼ ନାଆଁ ଗଲା ବେଢ଼ି
ପାରିଲି ନାହିଁ ବାହାର ହେ
ଭାଇ ମୋ ଶଙ୍କିଲେ ଝିଙ୍କେ ନ ଚଙ୍କିଲେ
ଅନଳ-ପରଦା ଶର ହେ
ମୋର ବଞ୍ଚାଇ ପରାଣ
କଲ ନବଡ଼ ପରଣ ଦାନ ହେ ।୧୪।

---

୧୩ । ଭଲାଭଲ-ଛଡ଼ା ଛଡ଼ି; ଏ କୁସୁମ ଯାଙ୍କ……ଅର୍ଥାତ ଫୁଲ ଯାହାଙ୍କର ଶାୟକ ବା ଧନୁ ଅଟେ ପ୍ରୀତ ଦେବତା ସେହି ମଦନ ।
୧୪ । ନବଡ଼—ସବନସ୍ତୁ ।

ଭବର ଅଙ୍କୁରି ହୋଇଲା ବଙ୍କର
ଘର ଅମ୍ବ ହେଲା ଢୋଲା ହେ
ମୁଁ ଛାର ଅଭାଗୀ ମୋହ ସୁଖ ଲାଗି
ଅଙ୍କୁ ହେଲା ମୁକୁଳା ହେ
ଅହେ ଦୟାର ବାରିଧି !
ତୁମ୍ଭେ ମାଧୁରୀ ବାଳାର ନିଧି ହେ ।୧୫।

ସବୁ କଥା ଏଥି ଲେଖିଗଲେ ପୋଥି
ହୋଇବ ଏହୁ ପଛର ହେ
ଧନ ଦନକର ଭାବ ବଖାଣିଲେ
ସମାନ ହେବ ବେଦର ହେ
ସେହି ଭାବ ମୋ ଭୂଷଣ
ତେଣୁଁ ଓହରିଅସିଛି ମନ ହେ ।୧୬।

ନର କଳପନା ନୋହୁ ଥିଲେ ଚୂନା
ଏ ଧରା ଅମରାବତୀ ହେ
ନମିଷେ ହୁଅନ୍ତା କେ କାମ୍ୟା ସହନ୍ତା
କଷଣ-ଜର-ତବତ ହେ ?
ବାସ୍ତବକୁ ଆସ ଫେର
ରଣ ଦେଇଛୁ ତୁମ୍ଭ ମାଧୁରୀ ହେ । ୧୭ ।

---

୧୫ । ମୁକୁଳା—ଖାଲି; ବାରିଧି—ସମୁଦ୍ର; ନିଧି—ମୂଲ୍ୟବାନ୍ ଜିନସ ।

୧୬ । ଭାବ—ମନର ପ୍ରୀତି ଯହିଁରେ ଦେହର ସମ୍ପର୍କ ନାହିଁ, ଓହରି ଅସିଛି—ଖସି ଆସିଛି ।

୧୭ । କଳନା—ପାଣ୍ଠି; ଅମରାବତୀ—ସ୍ୱର୍ଗ; ତବତ—ଜରଥିଲା ବେଳେ ଦେହରେ ଥିବା ତାପ; ବାସ୍ତବକୁ—ସଂସାରିକ ପ୍ରକୃତ ସ୍ଥିତିକୁ ।

ଚୂର୍ଣ୍ଣି ତୁମ୍ଭ ଚୂର୍ଣ ମାଧୁରୀ ଜୀବନ
ଦୁଃଖେ ସୁଖେ ଯାଉ କଟି ହେ
ନେଉ ହସଲେଖା ତୁମ୍ଭଙ୍କୁ ମୋ ସଖା !
ମୋରେ ଦିଅ ଚିତ୍ରପଟି ହେ
ପୂଜାରେ ତା ରଖି ଲକ୍ଷ୍ୟ
ଜୀବନ କଟିବ ମଧୁମୟ ହେ । ୧୮ ।

ଗଗନେ ଭାସ୍କର ପୁଣ ନିଶାକର
ପଙ୍କଜିନୀ; କୁମୁଦିନୀ ହେ
କୋଟିଏ ଯୋଜନ ଦୂରେ ବନ୍ଧୁ ସେହ୍ନେ
ବିଲୋକି ତାଙ୍କୁ ସୁଖିନୀ ହେ
ତେବେକି ହେ ରାଜକିଶୋର !
ସୁଖିନୀ ହେବ "ମାଧୁରୀ" ତୁମ୍ଭର ହେ ।୧୯।

ତୁମ୍ଭ ମୁଖ ଦେଖି ମୂରବ ତା ଆଖି
ଦେଖୁ ସେ ଦୋଳମୁକୁଟ ହେ
ଦେଖିବାର ପାଇଁ ନ ଥିବ ସେ ଜୀବ
ମୁଣ୍ଡେ ତୁମ୍ଭ ଜଟାଜୂଟ ହେ
ତୁମ୍ଭ ଶିବକୁ ନିରେଖି
ଉଚ୍ଛୁ ଜୀଇବ ତୁମ୍ଭ ସେବକୀ ହେ । ୨୦ ।

---

୧୮ । ଚିତ୍ରପଟି—ତୁମ୍ଭର ଅଙ୍କା ହୋଇଥିବା ମୂର୍ତ୍ତି ବା ଫଟୋ; ଲକ୍ଷ୍ୟ—ମନୋଯୋଗ ।

୧୯ । ଭାସ୍କର—ସୂର୍ଯ୍ୟ; ନିଶାକର—ଚନ୍ଦ୍ର; ପଙ୍କଜିନୀ—ପଦ୍ମ; କୁମୁଦିନୀ—କଇଁ; ମାଧୁ—ମାଧୁରୀର ଆଦର ଡାକ ।

୨୦ । ଦୋଳ ମୁକୁଟ—ଶିଖିବର ।

ଯାଅ ନାହିଁ ସଖା !  ବାଟରେ ମାଦ ଦେଖା
ଦନକରେ ଦଅ ମୋତେ ହେ
କଥା ଭାଷା ପାଇଁ  ନୁହଇ ଅଶାସ୍ତ୍ରୀ
ଦେଖିଲେ ଥରେ ପଥରେ ହେ
ଲଭିବଇଁ କୋଟିନିଧି
କେଣେ ଯାଅ ନା କର ଅବିଧି ହେ ।୨୧।

ତୁମ୍ଭ ଗଳ ବାହୁଁ  ଧୂଳି ମୁଁ ଗୋଟାଇ
ଝିଁସାରେ ରଖିବି ନେଇ ହେ
ଏ ପୋଡ଼ା ପରାଣ  ହୋଇବ କାରଣ
ନିର୍ମାଲ୍ୟ କରି ତା ପାଇ ହେ ,
ମଲେ ଅର ଜନମରେ
ଲାଗିଯାଇ ହେବି ଶ୍ରୀଅଙ୍ଗରେ ହେ ।୨୨।

ମାଅ ମଙ୍ଗଳାଙ୍କୁ  ମାଗଣା କରଇ
ମାଗିଛି ମୁଁ ଏକା ବର ହେ
ରସଲେଖା ଯେବେ  ମୋ ଜୀବନମଣି
ସୁଖେ କରନ୍ତୁ ସଂସାର ହେ
ଦୂରେ—ଅତିଦୂରେ ରହି
ସୁଖୀ ହୁଏଁ ଖାଲି ତାଙ୍କୁ ଚାହିଁ ହେ ।୨୩।

୧୯୪୫

୨୧ । ଅବିଧି—ଅନ୍ୟାୟ ।

୨୨ । ଝିଁସା—ଶ୍ଳେଟ ମୁଣା ଯହିଁରେ କି ନିର୍ମାଲ୍ୟ ଓ ପାଦୁକ ପ୍ରଭୃତି ରଖାଯାଏ ।

—୯୪—

# କେହ୍ନି ତ ଦରଦୀ ଜନ ଏକାକୀ ନାହ୍ନିଁ

"ଲଭ୍‌ସ୍ ଫିଲସଫି"

( ଇଂରାଜ କବି ଶେଲୀଙ୍କ କବିତାର ଛାୟାରେ )।

ରାଗ ଚୋଖି

ଝରଣା ସରିତ କୋଳେ ଢଳଇ ପୀରତି ଭୋଳେ
ସରିତ ସାଗରେ ମିଳେ ନିବଡ଼େ ଯାଇଁ ;
ପବନେ ଲୋଡ଼ୁ ପବନ ପ୍ରେମେ ଦିଏ ଆଲିଙ୍ଗନ
କେହ୍ନୁ ତ ଦରଦୀ ଜନ ଏକାକୀ ନାହ୍ନିଁ;
ଏକ ସାଥେ ମିଳିଲ ଅପର
ତୋହ୍ନ ମୋହ୍ନ ମେଳ ନୁହେ କି ଦୋଷ ମୋର ?

ପ୍ରେମମଦେ ହୋଇ ଘାରି ଅମ୍ବର ଚୁମ୍ବଇ ଗିରି
ଢେଉ ଉପରେ ଦେଖ ଗୋରି ! ଢଳଇ ଢେଉ
ଶୋଭାବତୀ ଫୁଲବାଳୀ ଲେଉଟାଇ ଦେଲେ ଅଳି
ତା ଉପରେ ନୋହେ ଚଳି କହଟି କେହ୍ନୁ ?
ଧବଳକଣ୍ଠେ ଦେଖ ତପନ
ବେଢ଼ାଇ ବେଷ୍ଟନ କରି, ଚୁମ୍ବେ ଲପନ ।

---

୧ । ଦରଦୀ—ପ୍ରେମୀ ।

୨ । ଅମ୍ବର – ଆକାଶ; ଅଳି – ଭ୍ରମର; ଚଳି ହେବା – ବିରକ୍ତ ହେବା; ରାଗ ହେବା; ଲପନ – ମୁଖ ।

ସାଗର ଉରସେ ଶଶୀ ଚୁମ୍ବଇ ଦେଖ ସୁହାସି !
ହେବ ଏ ଚୁମ୍ବନ ସୁଖି କି ଲଭ ମୋର ?
ତୋ ଚୁମ୍ବନ-ସୁଧା ପାଇଁ ହୋଇ ନିରନ୍ତର ବାଇ
ରହେ ଉପବାସୀ ହୋଇ ଏ ମୋ ଅଧର;
ଦଶଦଣ ପୀରତିମୟ,
ହେବ ନ ଟଳଇ ତଳେ ତୋହ ହୃଦୟ !

୧୯୪୫



୩ । ଉରସ — ସ୍ତନ ।



—୧୪—

# ଜଗଜ୍ଜନ ଈର୍ଷଣୀୟା ମମ ଗଳାମାଳା

( ଇଂରାଜୀ କବି ଏଚ, ଏଫ, ଲିଙ୍କ ଅଙ୍କି ଭବଧାର ଅନୁବାଦ )

( ଶ୍ରୀ ଶଙ୍କରଭରଣ )

( ଶୈଶବେ )

ଶଇଶବେ ଅଭ୍ରମୟୀ କାନ୍ତଲତା ରମା
ବାସନ୍ତୀ-ଉଷା-ନୀହାର-ଶୁଭ୍ର ଅନୁପମା
ଜପା-କାନ୍ତ-ରସାଣିତା
ସୁମ-ସୁକୁମାରୀ ସୁମ-ଲାବଣ୍ୟ-ମଣ୍ଡିତା ।

( ଯୌବନେ )

ଯଉବନେ ବୀଣାଭାଷୀ ରୂପସୀ ଷୋଡ଼ଶୀ
କାନ୍ତ-ଅଧିଦେବୀ ଶୋଭା-ପ୍ରପୂର୍ଣ୍ଣ ସରସୀ
ସୁଧା-ମୟୂଖ-ମଞ୍ଜୁଳା
ଜଗଜ୍ଜନ-ଈର୍ଷଣୀୟା ମମ ଗଳାମାଳା ।

---

୧ । ଅଭ୍ରମୟୀ—ଉଜ୍ଜ୍ୱଳତାମୟୀ; ରମା—ସୁନ୍ଦରୀ; ବାସନ୍ତ—ବସନ୍ତ କାଳର; ନୀହାର—ଶୁଭ୍ର—କାକର ବିନ୍ଦୁପରି ଧବଳା; କାନ୍ତ—ଫୁଲ; ରସାଣିତା—ମଣ୍ଡିତା; ସୁମ—ଫୁଲ; ସୁମସୁକୁମାରୀ—ଫୁଲପରି ମୃଦୁଳା ।

୨ । କାନ୍ତ-ଅଧି ଦେବୀ—କାନ୍ତର ଅଧିଷ୍ଠାତ୍ରୀ ଦେବୀ; ସରସୀ—ପୁଷ୍କରିଣୀ; ସୁଧା ମୟୂଖ ମଞ୍ଜୁଳା—ଚନ୍ଦ୍ର ତୁଲ୍ୟ ଶୋଭାବତୀ; ଜଗଜ୍ଜନ ଈର୍ଷଣୀୟା—ଯାହାର ରୂପ ଦେଖି ଜଗତ ଯାକର ଲୋକ ହିଂସାରେ ଜଳି ଯାନ୍ତି ।

( ବିବାହେ )

ବୟୋଧର୍ମେ ପକ୍ୱକାନ୍ତି ସୁଭବଣ୍ଡି ମାଳା
ଫଳଭରେ ଅବା ହେମ-ବଲ୍ଲରୀ ନମିତା
ପ୍ରିୟା ! ଜନନୀ-ରୂପିଣୀ
କୁଟୀର-କମଳାଳୟା ! ଶାନ୍ତ-ବିମୋହିନୀ !

( ମରଣେ )

ଅନ୍ତିମ ଶୟନେ ଯେବେ ମୁଦ୍ରିତଲୋଚନା
ପରମେଷ୍ଠି-ପରିପାଟୀ-ପରମ-ରଚନା
ଭବ ବିକାର ଖଣ୍ଡିତା
ଦିବ ଲୋକ ଭୂତ ଭୋଗ ଆଶା ବିମଣ୍ଡିତା ।

୧୯୪୪



---

୧ । ବୟୋଧର୍ମେ – ବୟସର ପ୍ରଭାବରୁ; ହେମ ବଲ୍ଲରୀ – ସୁନାର ଲତା;
କମଳାଳୟା – ଲକ୍ଷ୍ମୀ ।

୪ । ପରମେଷ୍ଠି – ବିଧାତା; ପରିପାଟୀ – ନିର୍ମାଣ କୌଶଳ, ଭବବିକାର
ଖଣ୍ଡିତା – ସଂସାରର ପାପ ତାପରୁ ଅନାକ୍ରାନ୍ତା; ଦିବଲୋକ – ସ୍ୱର୍ଗ
ଭୂତ – ସଂପଦ ।



—୧୭—

# ଚନ୍ଦ୍ର ଶୋଭାବନ୍ତ ଅବା ତୋ ଶୋଭାକୁ ଘେନି

( ରାଗ ଶଙ୍କରାଭରଣ )

ବି—ମ୍ବାଧରୀ ଶଶିକତହାସୀ ଚଳାମାଳି
ଛଂ—ଦବନୋଦନୀ ରଙ୍କପସରା ସଙ୍ଗୋଳି ।
ଦ—ରପଣ ମୁହାଁ ! ମନେ
ଟ—ନଣ ସେବକ ସେ ଦେଶେ କ୍ଷ ପଡ଼େ ଧନେ ?
ର—ସାଭୂଷା ! ଅଣାପାଶେ ଛନ୍ଦଣି କୋଯୂରେ
ନ—ଭଙ୍କା ଭ୍ରୂ ବାଇଗଲ୍ଲ ମର୍ତ୍ତି-ଦାରଅରେ
ପ—ଙ୍କେରୁହନେତ୍ରୀ ଧନ !
ଝ—ଉଫାଳ ଖୋସାର ତୋ ମୁଁ ଲଗି-ସୁମନ ।୨।
ନା—ଟୁଅ-ଖଞ୍ଜନ-ଜଣା ମଞ୍ଜୁ ଡୋଳାଲୀଳା
ଏ—କଲ୍ୟେ ନିରେଖିବା ଯେହ୍ନୁ ଦେଖିଗଲ
ଙ୍କ—ମ୍ବୁକଣ୍ଠି ! ସେ ବିରହି
ବି—ରହ-ଦହନ ଥିଲ ଅମ୍ବୁ ଗାଇଁ ସହି ।୩।

---

୧ । ବିମ୍ବାଧରୀ—ପାଚିଲ୍ଲ କଇଁଚ କାକୁଡ଼ି ପରି ଯାହାର ଅଧର ଲାଲ୍; ଶଶିକତ ହାସୀ—ଯାହା ହସର ସ୍ୱଚ୍ଛତା ଚନ୍ଦ୍ରକୁ ପଛରେ ପକାଇ ଦେଉଛି; ଛନ୍ଦ ବନୋଦନୀ-କୌତୁକ ପ୍ରିୟା; ଦର୍ପଣ ମୁହାଁ—ଯାହା ମୁହଁ ଦର୍ପଣ ପରି ସମୁଜ୍ଜ୍ୱଳ; ସେ ଦେଶେ—ସ୍ୱର୍ଗ ପୁରରେ ।

୨ । ରସାଭୂଷା—ରସା ଅର୍ଥାତ ପୃଥିବୀର ଅଳଙ୍କାର, କେୟୂର—ଗୃହର; ପଙ୍କେରୁହ—ପଦ୍ମ; ଝଉଫାଳ ଖୋସା—(ତୁଳନା କର) ଝଉଫାଳ ପରି ଖୋସା । ଖୋସିଛି ଯୋଷା—ଉପେନ୍ଦ୍ର ଭଞ୍ଜ; ଲଗି—ଲଗା ହେଉ ଥିବା ।

୩ । ଖଞ୍ଜନ—କଜଳପାତି ଚଢ଼େଇ, ମଞ୍ଜୁ—ସୁନ୍ଦର ଡୋଳାଲୀଳା-ଆଖିର ଭଙ୍ଗୀ; କମ୍ବୁ—ଶଙ୍ଖ; କଉଣ୍ଠ—ବାଧାତା; ଦହନ—ଅଗ୍ନି ।

ଏ—ବେ ତୋହି ପାରାବାର ହୃଦେ ବ୍ୟବଧାନ
ପୋ—ହଲା-ଅଧର ତୋର ସପନେ ସପନ
ଅ—ସ୍ଥି ନିଦିବବାସିନ ।
ସ୍ଥୁଂ—ଦ ଶୋଭିବନ୍ତ ଅବା ତୋ ଶୋଭାକୁ ଘେନ ।୪।

ଦ—ରଦ କରିଛୁ ବନ୍ଧୁ ! ବୁକୁର ସମ୍ବଳ
ନୀ—ରଧାର ପାଇଁ ପଥ ନୟନ ଯୁଗଳ
ଚ—କୋରର ଆଶା ବନ୍ଧ
ଉ—ଦତ-ସୁଧାଂଶୁ-ସୁଧା ନ ପାରିଲି ପିଇ । ୫ ।

କ—ହ କଳକଣ୍ଠି ! ଭଲ ମରଣ ସେ ପାରେ
ଚ—ମ୍ବୁ-କଣ୍ଠେ କଣା ଦାସେ ଉଡ଼ାଇଣ ଥରେ
ଟ—ହଟହ ରଙ୍ଗାଧରୁ
କ—ଷଣ-ପାସୋର ତୋକ ଦେବୁଛି କି ଭୀରୁ ! ।୬।

୧୯୩୪



୪ । ପାରାବାର—ସମୁଦ୍ର; ନିଦିବ—ସ୍ୱର୍ଗ ।

୫ । ଦରଦ—ଦରଜ ( ତୋ ବିଚ୍ଛେଦ ଜନିତ ); ବୁକୁ—ହୃଦୟ; ସମ୍ବଳ—ସମ୍ପଦ; ନୀରଧାର ପାଇଁ—ଲୁହ ଗଡିବା ପାଇଁ; ସୁଧାଂଶୁ—ଚନ୍ଦ୍ର ( ତୁଳନା କର—ତୁ ତ ହେଲୁ ପରହାତ, କନ୍ଦ କରେ ମୋ ପାଇଁ କେ ପିନ୍ଧିବ ବରତ ) ।

୬ । କଳକଣ୍ଠୀ—ମଧୁର ଭାଷିଣୀ; ମରଣ ସେ ପାରେ—ମୁଁ ସଂସାରରୁ ବିଦାୟ ନେବା ପରେ, କମ୍ବୁକଣ୍ଠ—ଶଙ୍ଖ ତୁଲ୍ୟ ତୋ ମନୋହର କଣ୍ଠରେ; ଟହ ଟହ—ଲାଲ ରଙ୍ଗ ଥୋପିପଡୁଥିବା; ରଙ୍ଗାଧର—ଲାଲ ଓଠ; କଷଣ ପାସୋର—ଯାହା ବିଚ୍ଛେଦଜନିତ ସବୁ ଦୁଃଖ ମୋତେ ଭୁଲେଇ ଦେବ ।



—୯୨—

## ଓମୋହନ ପାଖକୁ ହାରମଣି

ସ୍ୱର—ଧନାଶ୍ରୀ

( ରଣ ବଜେ ବାଣୀ )

ପରାଣ-ଦୋସର ! ଭ୍ରଷ୍ଟା ଭାନ୍ଧୁଁ ମୋର ପରବାଣିବାକୁ ଭବ
ବନ୍ଧୁକୁ ତୁମ୍ଭେ ଯେ ସିନ୍ଧୁ ବନାଇଛ ମେରୁ ବନାଇଛ ଯବ
ହେ ସଖା ! ଭଲ ତୁମ୍ଭ ମୋହ ଅଦ୍ୟ-ଦେଖା । ହେ ସଖା !
ଚତୁରାକ୍ଷରେ ଅନ୍ତର ଚଖା । ହେ ସଖା !
ପ୍ରୀତି-ଡଇଲେ ପରାଣ ସଖା । ହେ ସଖା ! । ୧ ।

ନ ଥିଲା ଗୋଚର ଅନ୍ତରେ ମୋହର ସିନ୍ଧୁ ଏ ଥିଲା ଗୋପନ
ଯାହା ଥିଲା ତାହା ବିନ୍ଦୁ ଏ ମାତର ବୋଲି ଭାବୁଥିଲା ମନ
ହେ ଧନ ! ଭଲ ହୋଇଲି ପୁଣଅଁ କାନ୍ଧ । ହେ ଧନ !
ଏବେ ଯୁଅର ନୁହେ କଳନ । ହେ ଧନ !
ବେଳା ଲଙ୍ଘିବାକୁ ଇଚ୍ଛେଁ ମନ । ହେ ଧନ ! । ୨ ।

---

୧ । ପରାଣ ଦୋସର—ପ୍ରାଣ ସଖା; ଯବ—ଶ୍ରେଷ୍ଠ ଶସ୍ୟ ବିଶେଷ; ମେରୁ—ମେରୁ ପର୍ବତ ( ଅର୍ଥାତ୍ ମୋ ହୃଦୟର ପ୍ରୀତିକୁ ଅଗାଧ କରିଅଛ ); ଚତୁରାକ୍ଷ—ଗୃଢ଼ଚକ୍ଷୁ ହେବା, ଅନ୍ତର—ଅଙ୍କ; ହୃଦୟ; ଚଖା—ମାଖି ହେବା ।

୨ । ନ ଥିଲା ··· ··· ମନ—ମୁଁ ଭାବିଥିଲି ମୋ ହୃଦୟରେ ଖୁବ୍ ଅଳ୍ପ ପ୍ରେମ ଥିଲା କିନ୍ତୁ ବର୍ତ୍ତମାନ ବୁଝିଲି ତାହା ସମୁଦ୍ର ପରି ଅପାର; ନୁହେ କଳନ—ଗଣି ହୁଏ ନାହିଁ; ବେଳା—କୂଳ ।

୩ । ପରିଣୀତା—ବିବାହିତା; ମଉନ—ମୌନ; ଛାଡି ନ ଦେଇ ଚୁପ ।

ମାତୁଳ-ଦୁହିତା ହେଲା ପରଣୀତା ମୁହିଁ ହସାଇଲ ଚନ୍ଦ
ମୋହନ ଚସ୍କର ! କୂର ଚଉ ଦୂର ହେଲା ମୋର ଏବେ ଦ୍ୱନ୍ଦ୍ୱ
ହେ ତୂଣି ! ଗଲା ପାସୋର କି ହାବ୍ରମଣି ? ହେ ଗୁଣି !
କର୍ପା ବହୁଛ ହୋଇ ମଣ୍ଡନୀ । ହେ ଗୁଣି !
"ହାବ୍" ପ୍ରେମ-ଦଉବ୍ରଖଣି ! ହେ ଗୁଣି ! । ୩ ।

ଏକାନ୍ତ ବେଳରେ ବଉଳମାଳରେ ମଣ୍ଡି ଦେଇ ମୋର ଗଳା
ଗଣ୍ଡେ ଗଣ୍ଡ ଦେଇ ଭାଷିଲ 'ସ୍ୱାମୀହିଁ !' ହେଲ ଅଜଠୁଁ ମଘବା
ରେ ଧନ ! ତୋହର ଲପନ୍ତ୍ ଶଶୀ ଜ୍ୟୋତ୍ସନା । ରେ ଧନ !
କୋଟି-ବସନ୍ତ ସୁଷମାମାନ । ରେ ଧନ !
ପଦ-ନଖେ ତୋ ନୁହେ ସମାନ । ରେ ଧନ ! ।୪।

ତରେ ତର ଧର ଭାଷିଲ "ସୁନ୍ଦର ! କହ କାଲ୍ ଶଭ ଦଣ୍ଡ"
ତୋଳା ମୁଁ ଚେକ୍ନଲ ମାରବେ ଭାଷିଲ ଦେବାକୁ ବାକ ନାହିଁ ଭ
ହେ ମାଳି ! ନେଇ ସାରଲିଣି ଫୁଲ ତୋଳି । ହେ ମାଳି !
ଛଳେ ଲତାରେ କରୁଛ ଅଳି । ହେ ମାଳି !
ହଟ କାହିଁକି ଏହାଠୁଁ ବଳି ? ହେ ମାଳି !" । ୫ ।

ଭାଷିଲି ମୁଁ ଧନେ "କପାଳି ଅଶନେ ନାହିଁ ଭଲ ଅଜ ମନ",
"ପେଟପୂରା କର ଦେଖିଛୁ ସୁନ୍ଦରୀ ! ତୋ ସୁଧାମୟ ଲପନ
ତା ଲଗି । ଭୋକ ଯାଇଛୁ ବଦାୟ ମାଗି ।" ତା ଲଗି ।
ଶୁଣି ଲଜ୍ଜେ ମୁଁ ପଳାଇଲ ଭାଗି ।" ତା ଲଗି ।
ଭାଳି କେଡ଼େ ତୁମ୍ଭେ ଅନୁରାଗୀ । ତା ଲଗି । ୬ ।

---

୪ । ମଘବା—ଇନ୍ଦ୍ର; ଜ୍ୟୋତ୍ସନା—ଜହ୍ନ; ସୁଷମା—ଶୋଭା ।
୫ । ଛଳେ—ନକଲ କର; ହଟ—ହଇରାଣ ।
୬ । ଅଶନେ—ଭୋଜନରେ; ଲପନ-ମୁଖ; ଅନୁରାଗୀ-ଦରଦୀ; ପ୍ରେମିକ ।

ମାଇଁଙ୍କ ପାଶରେ ବସି ମୁଁ କେଶରେ ଦିନେ ଖଞ୍ଜୁଥିଲି ଫୁଲ
ସାକ୍ଷୀଗୋପାଳଙ୍କ ଅଙ୍ଗ-ଲାଗି ଧଣ୍ଡି ଶୋଭାରେ ଯାହା ଅତୁଳ
ତା ଅଣି । ଥୋଇ ଦେଲି ମନ ମୋର ଜାଣି । ତା ଅଣି ।
ମାଇଁ କଲେ ମୋ ଚନ୍ଦ୍ର-ମଣ୍ଡଣି । ତା ଅଣି ।
ଫିଟିଗଲା ତୁମ୍ଭ ମୋଦ-ଖଣି । ତା ଅଣି । ୭ ।

ବାହାଘରେ ମୁହିଁ ଏକାକୀ ଥିଲିଇଁ ତହିଁ ହେଲ ପରବେଶ
ଭାଷିଲ ତଇଲେ ସାମଳ ମୋ ମାଳେ ସାଜିଛୁ ଯେଣୁ ତୁ ବେଶ
ରେ ସଖି ! ବରଣମାଳା ଅଛୁ ମୋ ରଙ୍ଗି । ରେ ସଖି !
ସାକ୍ଷୀଗୋପାଳ ଏଥିକୁ ସାକ୍ଷୀ । ରେ ସଖି !
ଲାଜେଇ ନ କର ନତ ତୁ ଅକ୍ଷି । ରେ ସଖି ! । ୮ ।

ତୋହଠାରୁ ଦୂରେ ରହି କେଉଁ ପୁରେ କେମନେ କାଟିବି ଦିନ
ତୋ ଶୋଭା ନିରେଖି ନ ପାରି ମୋ ଅକ୍ଷି ହେବ ଉପବାସେ ଦୀନ
ରେ "ହାରି" ! ବାହୁରେ ତୁ ସାଜିଦିଅ କାରି । ରେ ହାରି !
ତହିଁ ସାନନ୍ଦେ ଦେବଇଁ ଧରି । ରେ ହାରି !
ତହୁଁ ନାହିଁ ମୋହନ ବାଗୁରି । ରେ ହାରି ! । ୯ ।

---

୭ । ଅଙ୍ଗ-ଲାଗି—ପିନ୍ଧିଥିବା, ଧଣ୍ଡି—ମାଳ; ମୋଦ—ଆନନ୍ଦ ।
୮ । ସାମଳ—ସାଉଁଳ; ନକର ନତ—ନୁଆଁ ଅନାହିଁ—ତଳକୁ କୁଞ୍ଚିକର ନାହିଁ ।
୯ । ଦୀନ—କ୍ଷୁବ୍ଧ, ଦରିଦ୍ର; କାରି—କଏଦଖାନା; ମୋହନ—ସୁନ୍ଦର; ବାଗୁରି—ଜାଲ ।
୧୦ । ଶୀତ ପ୍ରଭାତର—ଶୀତ ଦିନ ସକାଳର; ନିଦାଘ—ଖରାଦିନ; ମନ୍ଦ—ସୁଲୁସୁଲିଆ, ଧୀର; ବାତ—ପବନ; ତରୁ—ଗଛ; ସୁଶୋଭନ—ଅତିସୁନ୍ଦର; ଭୁବ ହେଳନ—ପୂର୍ଣ୍ଣହ୍ରାସ ।

ଶୀତ-ସକାଳର କଅଁଳ ଖରା ତୁ ନିଦାଘ ଶୀତଳ ବାତ
ଜୀବନ ପିଠାକୁ ମିଠା ତୁ ଶୋଭାଙ୍ଗି ! ବରଷାପାତକୁ ଛାତ
ରେ ଧନ ! ତୁ ମୋ ନାସା-ନିଶ୍ୱାସ-ପବନ । ରେ ଧନ !
ଅଶାତରୁ ଫଳ ସୁଶୋଭନ । ରେ ଧନ !
ପ୍ରାଣକ୍ଷୁଧାକୁ ଭୁରି ଭୋଜନ । ରେ ଧନ ! । ୧୦ ।

ତୁମ୍ଭ ନୟନର ନିରେଖି ମୁଁ ଯାର ପୁଚ୍ଛିଲି ଲକ୍ଷ ବରଷ
“ନୟନ କମଳ କାହିଁକି ସଜଳ ଅପୂରୁବ ଏ ତ ଅଜ
ହେ ବନ୍ଧୁ ! କ୍ଷମା ଉଚ୍ଛୁଳାଅ ଶୋକସିନ୍ଧୁ । ହେ ବନ୍ଧୁ !
ଢାଙ୍କ ବଉଦେ ମୋ ମୁଦ-ଇନ୍ଦୁ । ହେ ବନ୍ଧୁ !
ମୁକୁଳାଅ ସଂଶୟର ଛନ୍ଦୁ ।” ହେ ବନ୍ଧୁ ! । ୧୧ ।

“ଅସିଅଛି ତାର ଯିବା ପାଇଁ ଘର, ରହିଲଣି ବହୁଦିନ
ଏମ୍, ଏ, ପରୀକ୍ଷା ମୋ ନିକଟ ବୋଲିଣ ଜନକ ତେଣେ ଉଚ୍ଛନ୍ନ
ରେ ଧନ ! ଅଙ୍ଗୁଯାଏ ଛାଡ଼ ମୋ ଜୀବନ ।” ରେ ଧନ !
ଦୃଷ୍ଟି-ନୀରଦ ଜଳ ମୋଚନ । ହେ ଧନ !
ଅଭିଳାଷ ମୋ କାନ୍ଦେ ଲପନ । ହେ ଧନ ! । ୧୨ ।

---

୧୧ । ମୁଦ—ଆନନ୍ଦ; ମୁକୁଳାଅ—ଖୋଲିଦିଅ, ସଂଶୟର ଛନ୍ଦୁ—ସନ୍ଦେହବନ୍ଧ ।

୧୨ । ତାର—ଟେଲିଗ୍ରାମ୍, ଉଚ୍ଛନ୍ନ—ଅଥୟ ।

ଗରବେ ମୋ ଛାତି ହୋଇଲା ଭରତି ଭରେ ପାଇଲି ମୁଁ ଛନ୍ଦ
ବଢ଼ି ପାଣି ସବୁ ଲୋକଙ୍କ ତୁମ୍ଭର ଭାଙ୍ଗିଲା ଧର୍ମ-ବନ୍ଧ
ମୁଁ ପରା । ଛାଏଁ ବାହୁବନ୍ଧେ ଦେଲି ଧରା । ମୁଁ ପରା ।
ଅବିରାମ ଲୋଡ଼ଇ-ଅପରା । ମୁଁ ପରା ।
ରଖି ନ ଦେଲ ତଳେ ମୋ ଗୁରୁ । ମୁଁ ପରା । ୧୩ ।

ନୀରସ ବସୁଧା ସରସ ହୋଇଲା ଓହ୍ଲାଇ ଅମରାବତୀ
ତୁମ୍ଭଙ୍କୁ ମୋହକୁ ଦେବ ପ୍ରାଣବନ୍ଧୁ ମର୍ତ୍ତ୍ୟପୁରେ କଲ ସ୍ଥିତି ।
ମୁଁ ଭାସେ । ବେଳା ଥରେକ ମାତର ଅସେ । ମୁଁ ଭାସେ ।
ଉର ଯୁଗଳକୁ ଯା ରହସେ । ମୁଁ ଭାସେ ।
ଝାଳ ଏକ କରେ ପ୍ରୀତି-ରସେ । ମୁଁ ଭାସେ । ୧୪ ।

ସଂସାର ଭରିଲା ତାମସରେ ମୋର ନୟନ କଲ ମୋ ଅନ୍ଧ
ଏ ବିରାଟ ରସା ମୋରେ ଅମାନିଶା ତୁମ୍ଭେ ମୋ ଗଗନ ଚାନ୍ଦ
ମୁଁ ବସି ! ଶୋକ ମାଳା ରଚେଁ ଦବାନଳି । ମୁଁ ବସି ।
ରାକା ସରଗ ସମ୍ପୂର୍ଣ୍ଣ ଶଶି । ମୁଁ ବସି ।
ଦୁଃଖଗିରି ଯାଉ ତଳେ ଲସି । ମୁଁ ବସି । ୧୫ ।

---

୧୩ । ଛାଏଁ—ନିଜ ଇଚ୍ଛାରେ, ଅବିରାମ—ବନ୍ଦ ନ ହେଉଥିବା, ଗୁରୁ—ଭାରିବା
୧୪ । ବସୁଧା—ପୃଥିବୀ; ଅମରାବତୀ—ସ୍ୱର୍ଗପୁର; ମର୍ତ୍ତ୍ୟପୁରେ କଲ ସ୍ଥିତି—ପୃଥିବୀରେ ରହିଗଲ; ଉର ଯୁଗଳକୁ—ଦୁଇଟି ଛାତିକୁ [ ପ୍ରେମିକ ଓ ପ୍ରେମିକା ଏ ଦୁହିଁଙ୍କ ଛାତି ବା ହୃଦୟକୁ ] ରହସେ—ଏକାନ୍ତରେ, ଝାଳ ଏକ କରଇ—ଖଣ୍ଡ ଖଣ୍ଡ ସୁନା ରୁପା ଝାଳ ହୋଇ ଏକ ହେଲା ପରି ମିଶାଇ ଦିଏ ।
୧୫ । ତାମସ—ଅନ୍ଧାର; ରସା—ପୃଥିବୀ; ଅମାନିଶା—ଅମାବାସ୍ୟା ରାତି; ରାକା—ପୂର୍ଣ୍ଣିମା; ସମ୍ପୂର୍ଣ୍ଣ ଶଶୀ—ପୂର୍ଣ୍ଣଚନ୍ଦ୍ର; ତଳେ ଯାଉ ଲସି—ତଳକୁ ଦବିଯାଉ ।

ଫୁଲ୍ ମୋତେ ନିଅଁ ଝୁଲ୍ ହୋଇଲାଣି ଅଙ୍ଗରାଗ ଭୁଜଙ୍ଗମ
ତୁଳୀତଳପ ସେ କଣ୍ଟକ କାନନ ଯୁଗ ହୋଇଲାଣି ଯାମ
ମୋ ବାସ ! ଅଙ୍ଗ-ବିହଙ୍ଗ ପାଦକୁ ଫାଶ । ମୋ ବାସ !
ଓଠ ସୁରଙ୍ଗ ମୋର ପାଉଁଶ । ମୋ ବାସ !
ଶଙ୍ଖଗୋଟା କଳନ୍ତା ହୁତାଶ । ମୋ ବାସ । ୧୬ ।

ବିରହ ସହିଲି ଜୀବ ମୁଁ ରହିଲି କହ କେଉଁ ଅଧିକାରେ
ଛଡ ଟେକାଇଣ ଭଉରେ ଅସନ ଲଭ ପ୍ରୀତି ଦରବାରେ
ହେ ସଖା । ବଲ୍ଲଭୀ ପଦରେ ହେବି ଲେଖା । ହେ ସଖା ।
ତହିଁ ମରଣ ମାତର ଏକା । ହେ ସଖା ।
ଦରଦୀ ନାମେ ଟେକେ ପତାକା । ହେ ସଖା । ୧୭ ।

ତୁମ୍ଭ କେତକର ଭାଜନ ମୁକୁର ହେବାକୁ ଅଶାୟୀ ଦାସୀ
କେତକ ଅସାରେ ଜିଞ୍ଜ୍‌ଲାଇ ଦେଲି ବନ୍ଧୁ ! ତା ପ୍ରାଣସରସୀ
ତା ପାଇଁ । ସାରା ବସୁଧାରେ ଠାବ ନାହିଁ । ତା ପାଇଁ ।
ସେ ଯେ ତୁମ୍ଭର ଶ୍ରୀଅଙ୍ଗ-ଛାଇ । ତା ପାଇଁ ।
ଦାସୀ ପଣକୁ ଏକା ଯୋଗାଇ । ତା ପାଇଁ ।୧୮।

---

୧୬ । ଅଙ୍ଗରାଗ—ସ୍ନୋ ପାଉଡ଼ର ଇତ୍ୟାଦି, ଭୁଜଙ୍ଗମ—ସାପ; ତୁଳୀତଳପ—ତୁଳିର ଶେଯ; କାନନ—ବନ; ଯାମ—ଷଣ୍ଡ; ହୁତାଶ—ନିଆଁ ।

୧୭ । ବଲ୍ଲଭୀ—ପ୍ରେମିକା; ଦରଦୀ—ପ୍ରେମିକ ବା ପ୍ରେମିକା ।

୧୮ । ଭାଜନ—ଯୋଗ୍ୟ; ମୁକୁର—ଦର୍ପଣ; ଅସାର—ଅସତ୍; ସରସୀ—ପୋଖରୀ, ଯୋଗାଇ—ଯୋଗ୍ୟ ଅଟେ ।

ଅସ୍ତୁଅସ୍ତୁ ମେଘ ଅସନ୍ତ ବିହଙ୍ଗ କରିବ ତାହାଙ୍କୁ ଦୂତ
ସପନରେ ସଖୀ ! ଦେବ ଅସି ଦେଖା ହାସ୍ୟମଣି-ହୃଦ-ହାର !
ସେ ପୁଣି ! ତୁମ୍ଭ ଅଙ୍ଗ ଛୁଇଁଥିବ ଜାଣି । ସେ ପୁଣି !
ଅତ ଅଧୀରେ ତା ଭୁଜ ବେନି । ସେ ପୁଣି !
ଚେଷ୍ଟେ ଦୁଏ ବାତେ ଚୁମ୍ବଦାନ । ସେ ପୁଣି ।୧୯।

ତୁମ୍ଭ ନାମାଙ୍କିତ ରୁମାଲକୁ ସେ ତ ଜରେ ତା ଛଟରେ ଚନ୍ଦନ
ତୁମ୍ଭ ବକୁଳର ମାଳ କର ହାର ରଚେ ତା ନନ୍ଦନବନ
ହେ ଧନ ! ପାଠୁଁ ଧାର କଣ୍ଠପସ୍ତୁ କ୍ଷଣ । ହେ ଧନ !
ନିଷ୍ଠେଁ କରିବ ଲିପି-ରଚନ । ହେ ଧନ !
ଅଲଂଘ୍ୟ ସେ "ହାସ୍ୟମଣି" ଋଣ । ହେ ଧନ ! ।୨୦।

୧୯୪୫



୧୯ । ବିହଙ୍ଗ—ପକ୍ଷୀ, ଦୂତ—ଦୂତ; ଦୁଏ ବାତେ ଚୁମ୍ବଦାନ—ବାୟୁରେ ଚୁମ୍ବେ ।

୨୦ । ନାମାଙ୍କିତ—ନାଆଁ ଲେଖାଥିବା, ଧାର—ଧାରକରି; କଣ୍ଠପସ୍ତୁ ବେଢେଢ, ଲିପି—ଚିଠି, ଅଲଙ୍ଘ୍ୟ—ଲଙ୍ଘି ହେଉ ନ ଥିବା ।



—୯୮—

# ହାର୍ମଣି ପାଖରୁ ମୋହନ

ସ୍ୱିଗ ଭୂଷିଅର—ତାଳ ଏକତାଳି

[ ଗୋପାଳ କୃଷ୍ଣଙ୍କ "ପଥ ଛାଡ଼ ଦେ ମୁଁ ଯିବି ଫୁଲ ତୋଳି, ଅରେ ବନମାଳି !" ବୃତ୍ତେ ]

ଯେନା ହେଉ ମୋ ଲିପି-ଲିଖିତ ବାଣୀ
ଅରେ ଶୋଭିରାଣି !
ପ୍ରୀତିରଚନାକୁ ପରି ତୁ ମୋ ବାଣୀ । ଘୋଷା ।

ତୁମ ମୂଳ ଯାଇ ସହି ! ମୋର ନୟନ ୍ନ କଲି ବେଦବର
ପଲକ ବରଜି ବର ଶୋଭି ହିଜ
ବିଲୋକୁଥାନ୍ତି ମୁଁ ନିରନ୍ତର । ୧ ।

ଓଠରେ ଓଠ ମିଳାଇ ଧନ ! ଜଳାଇଲି ତହିଁ ହୁତାଶନ
ଅଳପ ବୟସୁଁ ଏ୍ କଠୁ ମଦିରି
ଭଲି କେବେହେଁ ତଥି ଅଧିଷ୍ଠାନ ? । ୨ ।

ଭୁଜ ବେଣି ମୋର ଅକୁଳାନ କୋଟି ଭୁଜେ ବଳାଏ ମୁଁ ମନ
ମନବୋଧ କରି ରେ ଶୋଭି ବଲ୍ଲରି !
ନ ପାରଇଁ କରି ଅଲିଙ୍ଗନ । ୩ ।

---

୦ । ଲିପି – ଛିଠି; ବାଣୀ – କଥା; ବାଣୀ – ସରସ୍ୱତୀ ।

୧ । ବେଦବର – ସୃଷ୍ଟିକର୍ତ୍ତା, ବ୍ରହ୍ମା; ପଲକ ବରଜି – ଆଖି ପିଛୁଡ଼ା ନ ପକାଇ; ବର---ଶ୍ରେଷ୍ଠ; ବିଲୋକୁ ଥାନ୍ତି – ଦେଖୁ ଥାନ୍ତି ।

୨ । ହୁତାଶନ—ନିଆଁ; ମଦିରି—ମାଦକତା; ଅଧିଷ୍ଠାନ କଲି—ରହିଲି ।

ଅଳପ ଦିନର ପରିଚୟ ଲଜ ଟଳେ ଭୟ ନାହିଁ କ୍ଷୟ
ଉର-ଅଳକାରୁ ଠଉରାଏଁ ଭୀରୁ !
ପ୍ରଣୟ ତୋ କେଡ଼େ ସୁରମୟ । ୪ ।

ଜାଣଇଁ ନାହିଁ ମୁଁ ଗୁରୁଜନ 'ଙ୍କ ବାଧା କରିବେ ସରଜନ
ବାଧା ସହି ସିଧା ଠିଆ ହେବା ସିନା
ପୀରତି-ପରମ-ଅରଜନ । ୫ ।

ଦେନା କରି ମୋର ନିମନ୍ତ୍ରଣ ମୋ କୁମାରୀ ଶରୀ ସିଂହାସନ
ମଣ୍ଡିଛୁ କୁମାରୀ ! ମାଧବ-ମାଧୁରୀ
ପୂରିତ କରି ମୋ ପ୍ରାଣବନ । ୬ ।

ଚୁମ୍ବନେ ଶିଥିଳ କବରୀର କେଶ ଚୁମ୍ବିବାର ଉର ତୋର
ହିମ ଅଚଳକୁ ତମ ଘୋଟିବାର
ସୁଷମା ତା ଅଁଗେ କିବା ଥିର ? । ୭।

କେତକୀ-କଢ଼ି ଯା ଥାଉ ଖୋସି ଅସମ୍ଭାଳେ ତାହା ପଡ଼ୁ ଖସି
ମଦିର କରଇ ରଜନୀ-ତମକୁ
ସରଙ୍ଗ ପୁଲକ ଦଶଦିଶି । ୮ ।

---

୪ । ସୁରମୟ—ମାଦକତାରେ ଭରା ।
୫ । ପରମ—ଶ୍ରେଷ୍ଠ ।
୬ । ମାଧବ—ବସନ୍ତ କାଳୀନ ।
୭ । ଶିଥିଳ—ଢ଼ିଲା ହୋଇ ଯିବା, ଫିଟିଯିବା; କବରୀ—ଗଭା; ଉର—ସ୍ତନ; ହିମ ଅଚଳ—ହିମାଳୟ ବା ବରଫରେ ଢାଙ୍କି ହୋଇଥିବା ପର୍ବତ; ତମ—ଅନ୍ଧାର; ସୁଷମା—ସୌନ୍ଦର୍ଯ୍ୟ ।
୮ । ମଦିର କରଇ—ମାଦକତାରେ ଭରିଦିଏ; ଦଶଦିଶି—ଚାରିଆଡ଼େ ।

ଅଳତା ରଞ୍ଜିତ ପୟରରେ          ପଷାଣ ସଂସ୍ପର୍ଶୁ ଧୂଳି-ଭରେ
ତୋ ପୟର ତଳେ ଘାସ ହେବା ବାଞ୍ଛା
ସୁଧୂପିତ କରେ ମୋ ଅନ୍ତରେ । ୯ ।

ଅଳକା ନାଇବା ପାଇଁ ମୁହିଁ          କରଇଁ ବାରଣ ସୁନ୍ଦମୁହିଁ !
କୁଣ୍ଡେଳ ତ ଶୋହା ନ ହୁଅଇ ସୁହା
କୋଟି କୁଣ୍ଠିତ କି ସୁହା ଯାଇ ? । ୧୦ ।

ପଦ୍ମନାଭ ହେମ ସରସୀର          ସମାନ ସଖି ! ରେ କର ତୋର
କଣ୍ଠେ ହେଲେ ହାର କାହିଁକ ଅମର
ନର ହୋଇବେ ଟି ସୁନାଶୀର । ୧୧ ।

ରାଜରାଜେଶ୍ୱର ପଣ ମୁହିଁ          ତୋହ ଯୋନ ବଡ଼ ନ ମଣଇଁ
ଠହ ଠହ ରଙ୍ଗ ଅଧରୁ ତୋ ତୋଳେ
ମଧୁ, ଅମିୟକୁ କରେ ଠାହ । ୧୨ ।

---

୯ । ପଷାଣ ସଂସ୍ପର୍ଶୁ ଧୂଳି ଭରେ—ତୋ ଅଳତା ଲଗା ପଦର ପରଶ ପାଇ ନିର୍ଜୀବ ଧୂଳି ଜୀବନ ପାଏ, ବାଞ୍ଛା—କାମନା; ସୁଧୂପିତ କରେ ମୋ ଅନ୍ତରେ—ମୋ ହୃଦୟକୁ ସୁଗନ୍ଧରେ ଭରିଦିଏ ।

୧୦ । ଅଳକା—ମୁଣ୍ଡର ମନୋହର ଅଳଙ୍କାର ବିଶେଷ; ଶୋହା—ଶୋଭା; ନ ହୁଅଇ ସୁହା—ସହ୍ୟ ହୁଏ ନାହିଁ ।

୧୧ । ପଦ୍ମନାଭ ହେମ ସରସୀର—ତୋ ଦେହ ସୁନାର ଗୋଟିଏ ପୁଷ୍କରିଣୀ ଓ ତୋ ହାତ ତହିଁର ପଦ୍ମନାଭ ପରି; ଅମର—ଦେବତା; ସୁନାଶୀର—ଇନ୍ଦ୍ର ।

୧୨ । ଯୋନ—ଯୋଗ୍ୟ ; ଅମିୟକୁ କରେ ଠାହ—ଅମୃତକୁ ତୁଚ୍ଛ କରେ ।

ବଧୂ ହୋଇ ମଧୁ ଦେବୁ ମୋରେ    ବଧୂ ହେବୁ ତତ୍ତ୍ୱ-ବିଯୁତରେ
ସୀଧୁରେ ଉଚ୍ଛୁଳୀ ହେବ ଉରସ୍ଥଳ
ସପନ ଦେଖେଁ ମୁଁ ନିରନ୍ତରେ । ୧୩ ।

ବନସ୍ଥଳୀ କରି ସୁରଭିତ    ଫୁଟିଲ କେତକୀ ଅଗଣିତ
ଦରଦୀ ସାଙ୍ଗନ୍ତ ପ୍ରେୟସୀ—କୁନ୍ତଳ
ସେ ଦିନ କି ମନେ ଅଛି ମିତ ? । ୧୪ ।

ବଳେ ଧରି ତୋରେ ଶୁଚିସ୍ମିତା ! ଗଣ୍ଡେ ତୋ କୁଙ୍କୁମେ ରଚି ଶତା
ଉରେ ଅଙ୍କିବାକୁ ହୁଅନ୍ତେ ଲାଳସୀ
ବ୍ୟାଜରେ ହେଲୁ ତୁ କି କୁପିତା ! । ୧୫

ଭାଙ୍ଗିଲୁ ତହୁଁକି ବେଳ ଅଛି    ବାହୁ ଶିଥିଳାଅ ଛି ଛି ଛି ଛି
କେଶେ ମୋ କେତକୀ ଦିଅ ହେ ଏତିକି
ପାଇଁ ବନ୍ଧୁ ! ଅନୁମତି ଅଛି । ୧୬ ।

ସବନ୍ଧ ବାସନା ପ୍ରାଣ ସହି !    ବିବନ୍ଧ ହେବାକୁ ମନାସଇ
ଚୁମ୍ବନ ସରିତେ ଶୋଭି—ଅଙ୍ଗ ଯେତେ
ଡୁବାଇବି କେବେ ଦିଅ କହି । ୧୭ ।

---

୧୩ । ବଧୂ—କାନ୍ତା; ବିଯୁତ—ଆକାଶ; ସୀଧୁ—ମଦ୍ୟ ( ଏଠାରେ ମାଦକତା )ହେବ; ଉଚ୍ଛଳ—ଉଚ୍ଛୁଳିବ ।

୧୪ । ସୁରଭିତ—ସୁବାସିତ; ଅଗଣିତ—ବହୁ ସଂଖ୍ୟକ; ଦରଦୀ—ପ୍ରେମିକ; କୁନ୍ତଳ—କେଶ ।

୧୫ । ଶୁଚି ସ୍ମିତା—ମଧୁର ହାସୀ; ବ୍ୟାଜରେ—ମିଛ ମିଛିକା ।

୧୬ । ବାହୁ ଶିଥିଳାଅ—ଆଲିଙ୍ଗନକୁ କୋହଳ କରିଦିଅ ।

୧୭ । ସବନ୍ଧ—କଟକଣା ଥିବା; ବିବନ୍ଧ ହେବାକୁ ମନାସଇ—କଟକଣାକୁ ଫୋପାଡ଼ି ଦେବାକୁ ଚାହୁଁଛି; ଶୋଭି-ଅଙ୍ଗ—ତୋର ସୁନ୍ଦର ଦେହାଂଶମାନଙ୍କୁ ।

ପ୍ରତି ଲୁମ ମୂଳେ ସହ୍ୱ ! ମୋର ଉନ୍ମାଦ-ବାରୁଦ ରଚେ ଘର
ତହିଁକି ତୋ ଚିନ୍ତା ହେଉଛୁ ଅନଳ
ଅଧର-ଅମୃତେ ଶାନ୍ତ କର । ୧୮ ।

ଚଉ ଦମକାଇ ଦରଦୀର ଫୁଟିଲଣି ସହ୍ୱ ! କରବୀର
ଗନ୍ଧ-ଶୋଭ୍ର ତୋର ପଡ଼ୁଛୁ ରେ ମନେ ।
ଉତୁରଇ ମୋର ଦମ୍ଭ-କ୍ଷୀର । ୧୯ ।

କଳା-କେଶେ ଶ୍ୱେତ-ଚୂନା ସବ ଫୁଲ ମଣ୍ଡିଥାଉ ଶମ୍ପା-ଗୋବ !
ରଜନୀ-ତାମସ ମୂର୍ହାସ ଭଜଇ
ଢାଙ୍କି ନ ପାବ ତୋ କାନ୍ତ-ଶିଖ ।୨୦।

ସେବାରେ ମନାଇଁ ଉମା-ଈଶ ସହ୍ୱ ରେ ! ବରଣ୍ଡ ଜଳ-ବାସ
ଶୀକରେ ତୋ ନୀଳା-କମଳ ହୁଅନ୍ତି
ଜନମେ ଜନମେ ତା ମୋ ଆଶ । ୨୧ ।

ଖଣିରେ ଅପାର କାଳ ରହ୍ୱ କନକ ହୋଇ ମୁଁ ଗୃଦ-ମୁହିଁ !
ସୀମନ୍ତେ ତୋହର ଅଳକା ହେବାକୁ
ଅନଳରେ ହେଲେ ହୃନ୍ତ ଦାହ୍ୱ । ୨୨ ।

---

୧୮ । ଉନ୍ମାଦ—ତୋ ପାଇଁ ପାଗଳ ହେବା ପ୍ରବୃତ୍ତି ।

୧୯ । ଦମକାଇ—କମ୍ପାଇ; ଦରଦୀ—ପ୍ରେମିକ; କରବୀର—ଲାଲ କନିଅର ଫୁଲ; ଦମ୍ଭକ୍ଷୀର—ଧୈର୍ଯ୍ୟ ରୂପ ଦୁଗ୍ଧ ।

୨୦ । ରଜନୀ ତାମସ ମୂର୍ହାସ······କାନ୍ତଶିଖ—ରାତିର ଅନ୍ଧାର ତୋ ଦେହର କାନ୍ତିକୁ ଘୋଡ଼ାଇ ନ ପାରିବାରୁ ତା ବଢ଼ିଉଇ ଭାଙ୍ଗିଯାଏ ।

୨୧ । ଉମା-ଈଶ—ମହାଦେବ; ବରଣ୍ଡ ଜଳବାସ—ପାଣିରେ ବାସ କରି ରହନ୍ତୁ ।

୨୨ । କନକ—ସୁନା; ସୀମନ୍ତ—ସୁନ୍ଥା; ହୃନ୍ତଦାହ—ପୋଡ ହୁଅନ୍ତୁ ।

ଗୋଟି ପୋକ ରୂପେ ଅବତର ସୂତା ବୁଣନ୍ତିରେ ଶମ୍ପା-ଗୋର !
ତୋ ଅଙ୍ଗରେ ପୀତାମ୍ବର ଶୋଭା ଅଟେ
ଖୋସା ଭିତରେ ମୁଁ ଯାନ୍ତି ମରି । ୨୩ ।

ଢପାଫଳ ଅବା ହୋଇ ଯାନ୍ତି ପିଞ୍ଜା, ଭଣା, ବୁଣା ମୁଁ ସହନ୍ତି
ହୋଇ ହୀନ ବାସ କରନ୍ତି ପରଶ
ସାର ସାର ତୋର ଅଙ୍ଗପନ୍ତି । ୨୪ ।

ବାଳାରୁଣ ଅଧ ବିଧୁ ଭାଳେ ସିନ୍ଦୂର ବିନ୍ଦୁ ତୋ ହେବ ଭାଲେ
ବର ଅନଳରେ ! ବର ଅଣରେ ମୁଁ
କମ୍ବୁ ହୋଇବଇଁ ଶମ୍ଭୁ ଆଲେ । ୨୫ ।

ଅନଳ ଗରଭେ ରହ୍ନ କର ଅଞ୍ଜନ ହୋଇ ମୁଁ ସୁକୁମାର !
ଖଞ୍ଜନ-ଗଞ୍ଜନ ମାନସ-ରଞ୍ଜନ
ଶଫରୀ-ନେତ୍ର ରଞ୍ଜିବି ତୋର ।୨୬।

---

୨୩ । ଶମ୍ପାଗୋରୀ—ବିଜୁଳିବରଣା ।

୨୪ । ସାର ସାର—ବଛା ବଛା ।

୨୫ । ବାଳାରୁଣ—ଉଇଁ ଥିବା ସୂର୍ଯ୍ୟ, ଅଧବିଧ—ଅର୍ଦ୍ଧଚନ୍ଦ୍ର (ଅର୍ଥାତ ତୋ କପାଳ ଅର୍ଦ୍ଧଚନ୍ଦ୍ର ପରି, ସିନ୍ଦୂର ବିନ୍ଦୁ ତା ଭିତରେ ଉଇଁ ଥିବା ସୂର୍ଯ୍ୟପରି ଲାଲ ଓ ସୁନ୍ଦର ) ବର-ଅନଳ—ସୁନ୍ଦର ମୂର୍ତ୍ତି; ବର ଅଣରେ···ଶମ୍ଭୁ ଆଲେ—ଏ ସୌଭାଗ୍ୟ ଅର୍ଜିବାକୁ ମୁଁ ଶମ୍ଭୁ ଅର୍ଥାତ ମହାଦେବଙ୍କ ଆଳ ବା ମନ୍ଦରରେ କମ୍ବୁ ବା ଶଙ୍ଖ ହୋଇ ତପସ୍ୟା କରିବି; ଅଞ୍ଜନ—କଜ୍ଜ୍ୱଳ ।

ନେତ୍ର-ବାଣ-କ୍ଷତ ଯୁବା-ଗଣ— କ୍ଷରନ୍ତ ପାଟଳ ଯେ ରକ୍ତ
ତହିଁରେ ତୋ ପଦେ ଟୀକା ଅଙ୍କିବାକୁ
ଅଲତା ହୋଇବ ମୋ ବାଞ୍ଛିତ । ୨୭ ।

ଅଲତା ରଞ୍ଜିତ ପଦୁଁ ତୋର ସୁଧା ସ୍ରେପିବାକୁ ନିରନ୍ତର
ସ୍ୱର୍ଣ୍ଣଭାର କରୁଁ ପାହାର ସମ୍ଭବ
ପାଉଞ୍ଜି ହେବାକୁ ପଯ୍ୟବର । ୨୮ ।

ପବଣ ବାଞ୍ଛିବ ଭାର ହେବ ମୁକୁର-ଭୂତ ମୁଁ ଅଭଜାବ
ଦୁର୍ଲ୍ଲଭ ଦର୍ଶନ ତୋ ଗ୍ରୀବୁ ଲପନ
ପେଟ ପୂରାଇ ମୁଁ ନିରେଖିବ । ୨୯ ।

ତୋ ମୁଖେ ନ ପାରେଁ ସ୍ୱେଦ ସହି ବ୍ୟଜନ ସଜନି । ହୋଇବଇଁ
ସୁଖେ ନିଦ ଗଲେ ଉରେ ଠାବ ପାଇ
ଅମର ଭୂତରେ ହେବ ମୋହି । ୩୦ ।

---

୨୭ । କ୍ଷରନ୍ତ—ଝରୁଥିବା; ପାଟଳ—ଲାଲ; ଟୀକା—ଚିହ୍ନ; ବାଞ୍ଛିତ-ବାଞ୍ଛା—କାମନା ।

୨୮ । ସ୍ୱର୍ଣ୍ଣଭାର—ବଣିଅ, ପାଉଞ୍ଜି—ପାଦର ମନୋହର ଅଳଙ୍କାର ବିଶେଷ ।

୨୯ । ମୁକୁର-ଭୂତ—ଦର୍ପଣର ଭାଗ୍ୟ, ଦୁର୍ଲ୍ଲଭ ଦର୍ଶନ—ଦେଖିବାକୁ ମିଳୁ ନ ଥିବା ।

୩୦ । ସ୍ୱେଦ—ଝାଳ, ବ୍ୟଜନ—ବିଚଣା; ଠାବ—ସ୍ଥାନ; ଭୂତ—ସମ୍ପଦ ।

ସୁମନେ ମନାଇଁ ଗିରିସୁତା  ବନ୍ଧୁଅ ! ହେବ ତୋ ଅଞ୍ଜଳିସୁତା
ଦେବତା ହିଂସିବେ ସଉଭାଗ୍ୟ ମୋର
କେ ପଚ୍ଛୁରେ ଛାର ନର କଥା ! । ୩୧ ।

କୁଙ୍କୁମରେ ହେବ ଜର ଜର  ଲକୁଚ-କୁଚେ ତୋ ହୋଇ ହାର
ଗଉର-ଅଚଳେ ଗଙ୍ଗା ଧାର ହେବା
ବର ସଜେ ଦେବେ ଗଙ୍ଗା-ଧର !! । ୩୨ ।

ତପସ୍ୟାର ଲଭିବଇଁ ସିଦ୍ଧି  ଚମ୍ପା ଅଙ୍ଗୁଳରେ ହେବ ମୁଦ୍ଧ
ହେଲେ ସବୁ ଅଙ୍ଗ ପରଶ ଲଭିବ
ବିଶେଷେ ଯାହା ଅମୂଲ୍ୟ ନିଧି । ୩୩ ।

ଶଙ୍କର ଶଙ୍କରୀ ମନାଇବି  ଗାଧୁଅ ତୁଠେ ତୋ ଶିଳା ହେବି
ଅଳତା-ରଞ୍ଜିତ ପଦଘଷା ଲଭି
ହେଲେ ଜୀବନ୍ୟାସ ଅରଜିବି । ୩୪ ।

ଚନ୍ଦ୍ରାଙ୍ଗି ରେ ! ତୋର ଅଙ୍ଗ ଧୋଇ  ଚନ୍ଦ୍ରୋତ୍ପଳା ନୀର ଅଛେ ବହି
ଅତି ନିବିଡ଼େ ମୁଁ ଅଲିଙ୍ଗଇ ତାରେ
ଅଧୀରେ ସହସ୍ରାର୍ଜୁନ ହୋଇ । ୩୫ ।

---

୩୧ । ଗିରିସୁତା—ପାର୍ବତୀ; ହିଂସିବେ—ଈର୍ଷା କରିବେ ।

୩୨ । ଲକୁଚ—ଜେଉଚ ଫଳ ଏହା ସହିତ କୁଚର ତୁଳନା ହୁଏ; ଗଉର-ଅଚଳ—ଧବଳ ପର୍ବତ; ଗଙ୍ଗାଧର—ମହାଦେବ ।

୩୩ । ଅମୂଲ୍ୟନିଧି—ଅତି ଅମୂଲ୍ୟ ସମ୍ପଦ ।

୩୪ । ଜୀବନ୍ୟାସ ଅରଜିବି—ମୁଁ ପଥର ହୋଇ ସୁଦ୍ଧା ପ୍ରାଣ ପାଇଯିବି ।

୩୫ । ଚନ୍ଦ୍ରାଙ୍ଗୀ—ସୁନାବରନା; ଚନ୍ଦ୍ରୋତ୍ପଳା—ମହାନଦୀ; ସହସ୍ରାର୍ଜୁନ ହୋଇ—ପୁରାଣ ବର୍ଣ୍ଣିତ ସହସ୍ରାର୍ଜୁନ ପରି ହଜାରେ ବାହୁରେ ।

ଶବେ ତୋ ଅନାଇଁ ଗ୍ରାମାବଧ ! ମୁଖ ଚୁମ୍ବିବାକୁ ଅଗଭର
ହେଉଁ ନୟନ ଲେଉଟେଁ ହୁଏ ଅଳି
ଓଠ ପରଶଇ ଭିର୍ତିର । ୩୬ ।

ସପନେ ଶମ୍ପାଙ୍ଗି ! କରୁ ହଠ ପଳାଉ ଗଲେ ମୁଁ ତୋ ନିକଟ
ଶମ୍ପା ଧରିବାର ବାତୁଳ ପ୍ରକାର
ହୁଏଁ ଗ୍ରତସାର ଛୁଟପଟ । ୩୭ ।

ଦିନେ ଦିନେ ସନ୍ଧ ! ନିଶୀଥରେ ଝିଙ୍କାରି ଝଙ୍କାର ଶୁଣି ଥରେଁ
ମଞ୍ଜିର-ନିକ୍ୱଣ ଅନୁକର ତୋର
ଛନକା ଉଠେର ତା ମୋ ଚିତ୍ତରେ । ୩୮ ।

ତୋ ଗନ୍ଧ ସେବତୀ ପାଖୁଡ଼ାର ଗନ୍ଧ ଦିନେ ଦିନେ ଗ୍ରାମାବର !
ନାସାକୁ ଆସଇ କାହୁଁ ନ ଜାଣେଁ
ସ୍ଫୁରିତ ପବନ ତାର ସ୍ତେର । ୩୯ ।

ଏକ ହୋଇ ବହୁ ଅଭ୍ୟୁହ୍ନ ଯେତେ ସ୍ୱପ୍ନେ ତେତେ ତୁ ଦିଶୁଛୁ
ମଥିବା ପାରିଁକ ପରାଣ ମୋହର
ପ୍ରତି ରୁମ ମୂଳେ ପ୍ରବେଶୁଛୁ । ୪୦ ।

---

୩୬ । ଭର୍ତି — ଭ୍ରାନ୍ତ ।

୩୭ । ଶମ୍ପାଙ୍ଗୀ — ବିଜୁଳି ବରନା ।

୩୮ । ନିଶୀଥ — ରାତ୍ରିଅଧ; ଥରେ — କମ୍ପେ; ମଞ୍ଜୀର ନିକ୍ୱଣ — ତୋ ଗୋଡ଼ ଅଳଙ୍କାରର ଝୁମ ଝୁମ ଶବ୍ଦ; ଅନୁକର — ଅନୁକରଣ କରି ।

୩୯ । ସ୍ଫୁରିତ — ଭେଦିଲା ।

୪୦ । ବହୁ ଅଭ୍ୟୁହ୍ନ — ବହୁତ ପରି ଜଣା ପଡୁଛୁ ।

ତବ ସଙ୍ଗ ! ଅଭଙ୍ଗାଇ ତଟରେ    ପ୍ରାଣ ଡୁବାଇ ତୁ ପ୍ରାଣ ପୂରେ
ସ୍ମିତେ ରଶ୍ମିଦେଲେ ସ୍ନିଗ୍ଧ ଚନ୍ଦ୍ରାତପ
ତାପ ପଳାଇବ ହେଲେ ଦୂରେ । ୪୧ ।

ମଞ୍ଜୀର କଙ୍କଣ ନାଦ ରତ    ଭଗ୍ନ ହେବ ଯେବେ ମଞ୍ଜୁଶଚୀ
ଧୂପିତ ଗନ୍ଧର ସ୍ନିଗ୍ଧ ସ୍ନିଗ୍ଧ ଗନ୍ଧ—
ଭାରେ ବାତ ନ ପାରିବ ବହି । ୪୨ ।

ବନଜ-ବଦନ-ମଧୁକର    ତବ-କୋଷର ତୋ ଧନଚୋର
ସଙ୍ଗୀତ-ଲୋଲୁପ ମୋହନ-ନୟନ
ଉଲ୍ଲାସେ ହୋଇବ ଲୁବ୍ଧ-ଭର । ୪୩ ।

ସେ ନୀରେ କଜ୍ଜଳ ନୟନର    ଧୋଇ ହେବ ତୋର ନାରଖାର
ନିବିଡ଼ ବାହୁଭିଡ଼ାରେ ଜୀବଧନ !
ବିରହ କରିବ ହାହାକାର । ୪୪ ।

୧୯୪୫



୪୧ । ସ୍ମିତ — ମୃଦୁ ହସ; ଚନ୍ଦ୍ରାତପ — ଜହ୍ନୁଆ ।

୪୨ । ନାଦ — ଶବ୍ଦ; ମଞ୍ଜୁଶଚୀ — ମଞ୍ଜୁରେ ସ୍ୱର୍ଗରାଜ ଇନ୍ଦ୍ରଙ୍କ ଭାର୍ଯ୍ୟା ପରି ସୁନ୍ଦରୀ; ଧୂପିତ ଗନ୍ଧ — ଧୂପଦ୍ୱାରା ହୋଇ ସୁବାସିତ ହୋଇଥିବା; ବାତ ନ ପାରିବ ବହି — ସୁଗନ୍ଧର ଭାର ବହି ନ ପାରି ଅଣନିଶ୍ୱାସୀ ହୋଇଯିବ ।

୪୩ । ବନଜ — ପଦ୍ମ; କୋଷ — ଭଣ୍ଡାର; ସଙ୍ଗୀତ ଲୋଲୁପ — ସଙ୍ଗୀତ ଲାଳସୀ ।

୪୪ । ନିବିଡ଼ — ଗାଢ଼; ବାହୁଭିଡ଼ା — ଆଲିଙ୍ଗନ; ବିରହ କରିବ ହାହାକାର — ବିରହ ମଲି ମଲି ବୋଲି ଡାକ ଛାଡ଼ିବ ।



—୯୯—

# ପ୍ରିୟତମ କୋଇଲି

[ କାନ୍ତ କୋଇଲି—ବୃତ୍ତ ]

କୋଇଲି ! କହ ଯାଇଁ ପ୍ରିୟତମେ ମୋର ।
କମଳେ ମଣ୍ଡିବା ଗନ୍ଧ ହେଲା କି ପାସୋର ଲୋ କୋଇଲି ।୧।
କୋଇଲି ! ଖଣ୍ଡିତ ହୋଇଲା ସୁଖ ମୋର ।
ଖେଳ ବନ୍ଧୁ ଭିଆଇଲା ଏ ବିରହ ଘୋର ଲୋ କୋଇଲି । ୨ ।
କୋଇଲି ! ଗଗନରେ ଦେଖି ସେ ମୁଦିର ।
ଗେଳେ କହନ୍ତି ଏଥିଁ କଳା ତୋ ଚିକୁର ଲୋ କୋଇଲି । ୩ ।
କୋଇଲି ! ଘଟିଥିଲା ଯେତେବେଳେ ପରିଚୟ ।
ଘଡ଼ିକି ଘଡ଼ି ସୁମରି ମନ୍ଥେ ତା ହୃଦୟ ଲୋ କୋଇଲି । ୪ ।
କୋଇଲି ! ଅଳତାରେ ରଞ୍ଜି ମୁଁ ପୟର ।
ଓଦାବାସେ ନଈ ତୁଠୁଁ ଫେରୁଥିଲି ଘର ଲୋ କୋଇଲି । ୫ ।
କୋଇଲି ! ଚଟୁଳ ନୟନ ମୋ ଥକିତ ।
ସ୍ମରୁ ଚନ୍ଦ୍ରାନନେ ତାଙ୍କ ହେଉଁ କପଟିତ ଲୋ କୋଇଲି ।୬।
କୋଇଲି ! ଛଳ କରି ଭାଷିଲେ "କଲେଜ ।
ଛୁଟି କହିପାର ଅଛଇ କି ନାହିଁ ଆଜ ?" ଲୋ କୋଇଲି । ୭ ।

---

୧ । କମଳେ—ପଦ୍ମଫୁଲରେ ।
୨ । ଖଣ୍ଡିତ ହୋଇଲା—ଭାଙ୍ଗିଗଲା ।
୩ । ମୁଦିର—ମେଘ; ଗେଳେ—ସ୍ନେହରେ; ଚିକୁର—କେଶ ।
୬ । ଚଟୁଳ—ଚଞ୍ଚଳ; ହେଉଁ କପଟିତ—ପଡୁଁ ପଡୁଁ ।
୭ । ଛଳ କରି—ବାଆଁରେଇ ହୋଇ ।

କୋଇଲି ! ଜମ୍ଭୁ ହେଲା ଜାଣିଲି ଦୁଷ୍ଟିର ।
ଜଣାଇଲି 'ଅସ୍ତୁ" "ଘେନନ୍ତୁ ମୋ ନମସ୍କାର"ଲୋ କୋଇଲି ।୮।
କୋଇଲି ! ଝରାଇଣ ବଚନ ଅମୃତ ।
ହର୍ଷିତ ଭାଷିଲେ "ଧନ୍ୟବାଦ ମୋ ବହୁତ" ଲୋ କୋଇଲି ।୯।
କୋଇଲି ! ନୂଆ ଏହୁ ବାକ୍ୟ ବିନିମୟ ।
ନିବାଡ଼ ଯୋଡ଼ିଲା ଆମ୍ଭ ଯୁଗଳ ହୃଦୟ ଲୋ କୋଇଲି ।୧୦।
କୋଇଲି ! ଟିକାଏକ ଆଡ଼ ଗୃହାଁ ପୁଣ ।
ଝାଳି ଦିଅଇ ଏସନ ଯୁବା ନୂଆ ମନ ଲୋ କୋଇଲି ।୧୧।
କୋଇଲି ! ଠିକେ ମୁଁ କହୁଛି ଶୋଭା ମୂଳେ ।
ଠଣି-ମଧ୍ୟା ନୂଆ-ଉର କିଣି ଥାନ୍ତି ହେଲେ ଲୋ କୋଇଲି ।୧୨।
କୋଇଲି ! ଡର ତାଙ୍କୁ ନ ରହିଲା ଆଉ ।
ଉଚ୍ଚାରିବ ହେଉଁ ଶବ୍ଦେ ହେଲେ ସେହୁ ପ୍ରହୁ ଲୋ କୋଇଲି ॥
କୋଇଲି ! ଢକ୍କା-ବଜା ହୋଇଲା ପୀରତି ।
ତମ କହୁନାହିଁ ଢକ୍କା ଝାଣ କଲା ଘାତ ଲୋ କୋଇଲି ।୧୪।

---

୧୦ । ବାକ୍ୟ ବିନିମୟ—କଥାବାର୍ତ୍ତା; ନିବାଡ଼—ଠାଣ କରି ।

୧୧ । ଆଡ଼ଗୃହାଁ—ବାଙ୍କ ଗୃହାଣି; ଝାଳି ଦିଅଇ—ଅଥୟ କରିଦିଏ; ଯୁବାନୂଆମନ—ନୂଆ ପ୍ରେମରେ ଭର୍ତ୍ତି ହୋଇ ଆସୁଥିବା ଯୁବକ ମାନଙ୍କର ମନ ।

୧୨ । ଠିକେ—ଠିକ କରି; ଶୋଭାମୂଳେ—ନିଜର ସୌନ୍ଦର୍ଯ୍ୟ ବଳରେ; ଠଣିମଧ୍ୟା—ସୁନ୍ଦର କଟିଥିବା ଯୁବତୀ; ନୂଆ-ଉର—ନୂଆ ପ୍ରେମରେ ଭର୍ତ୍ତି ହୋଇ ଆସୁଥିବା ଯୁବକଙ୍କ ଚିତ୍ତ ।

୧୩ । ଡର—ସଂକୋଚ; ପ୍ରହୁ—ପ୍ରଭୁ; ମାଲିକ ।

୧୪ । ଢକ୍କା ବଜା—ଚାରିଆଡ଼େ ପ୍ରକଟିତ; ତମ କହୁନାହିଁ—ବଢ଼େଇ କରି କହୁ ନାହିଁ; ଢକ୍କା—ଢେଙ୍ଗୁରା ( ଏଠାରେ ଆମ୍ଭ ଦୁହିଁଙ୍କ ପ୍ରୀତିର ଜନ ମୁଖରେ ପ୍ରଚାର ) ।

କୋଇଲି ! ନମନ ମୁଁ କଲି ତୋ ସୁରତେ ।
ନାହିଁ ତାଙ୍କ ସମ କେହି ମୋର ଏ ମରତେ ଲୋ କୋଇଲି ।୧୫।
କୋଇଲି ! ତପସ୍ୟାର ଫଳ ସେ ମୋହର ।
ତପତ କନକ ଅଙ୍ଗ ସୁଲକ୍ଷ ତାଙ୍କର ଲୋ କୋଇଲି ।୧୬।
କୋଇଲି ! ଥିର ଶମ୍ପା ସବୁ ବାହୁବନ୍ଧେ ।
ଥାଇ ମୁଖେ ଗୁହିଁ ହସିବାର ବେଳେ ମନ୍ଦେ ଲୋ କୋଇଲି ।୧୭।
କୋଇଲି ! ଦରଦୀ ଉର ସେ ତାଙ୍କ ଫେଇ ।
ଦାସ ସେ ମୋ ବୋଲି କେତେ ଜରନ୍ତି ବଢ଼ାଇ ଲୋ କୋଇଲି ।୧୮।
କୋଇଲି ! ଧୀରେ ପୁଣି ଧରି ମୋ ଚିବୁକ ।
ଧୃତିହର ତହିଁ ତାଙ୍କ ଦେଖନ୍ତି ଶ୍ରୀମୁଖ ଲୋ କୋଇଲି ।୧୯।
କୋଇଲି ! ନିବିଡ଼ରେ କରି ଆଲିଙ୍ଗନ ।
ନିମିଷେ ଅମରାବତୀ କରି ସରଜନ ଲୋ କୋଇଲି ।୨୦।
କୋଇଲି ! ପାନ ସେ କରନ୍ତି ଜବାଧର ।
ପକ୍ଷ୍ମ ଚୁମ୍ବନରେ ହେଲେ ହୁଏ ଜର ଜର ଲୋ କୋଇଲି ।୨୧।

---

୧୫ । ସୁରତେ—ଆଗରେ; ମରତେ—ପୃଥିବୀରେ ।
୧୬ । ତପତ-କନକ-ଅଙ୍ଗ—ନିଆଁରେ ତାତି ହୋଇଥିବା ସୁନା ପରି ରଙ୍ଗ ବିଶିଷ୍ଟ ମୋ ଦେହ ।
୧୭ । ଥିରଶମ୍ପା—ମଣିପୁରରେ ସ୍ଥିରୀକୃତ ହୋଇ ରହିଯାଇଥିବା ବିଜୁଳି; ବାହୁବନ୍ଧେ—ଆଲିଙ୍ଗନରେ, ମନ୍ଦେ—ଅଳପ କରି ।
୧୯ । ଦରଦୀ—ପ୍ରେମମୟ; ଉର—ଛାତି; ଫେଇ—ଫିଟାଇ; ଜରନ୍ତି ବଢ଼ାଇ — ଗର୍ବ କରନ୍ତି ।
୨୦ । ଧୃତିହର — ମୋ ଧୈର୍ଯ୍ୟକୁ ଯେ ନାଶ କରନ୍ତି ।
୨୧ । ନିବିଡ଼ରେ — ଗାଢ଼ଭାବରେ; ଅମରାବତୀ — ସ୍ୱର୍ଗ ।

କୋଇଲି ! ଫାଶେ ଧରା କୁରଙ୍ଗୀ ସମାନ ।
ଫାନ୍ଦେ ପଡ଼ି ବାହୁ ବନ୍ଧେ ହରାଏଁ ମୁଁ ଜ୍ଞାନ ଲୋ କୋଇଲି ।୨୨।

କୋଇଲି ! ବନ୍ଧୁ ଗଲଣି ଛ ମାସ ହୁଇ ।
ବନ୍ଧୁ ଭେଟଗଲେ କଣ୍ଠ ହସ୍ତ ଦୁଇ ପାଇଁ ଲୋ କୋଇଲି । ୨୩ ।

କୋଇଲି ! ଭାବର ଭିଡ଼ ମୋ ଉରେ ହୋଇ ।
ଭାସିଯାଏ ଧୈର୍ଯ୍ୟବନ୍ଧ କାକୁ କହିବଇଁ ଲୋ କୋଇଲି । ୨୪ ।

କୋଇଲି ! ମହୀ ଅଳଙ୍କାର ତାଙ୍କ ରୂପ ।
ମନ ରାଇଜର ସେ ମୋ ଏକଛତ୍ର ଭୂପ ଲୋ କୋଇଲି । ୨୫ ।

କୋଇଲି ! ଯତନ ସେ ତନୁଙ୍କ ସୁଷମା ।
ଯୁବା କେ ଚରିନ୍ତି ନ ଜାଣେଁ ମୁଁ ତାଙ୍କ ସମ ଲୋ କୋଇଲି ।୨୬।

କୋଇଲି ! ରୁଚିର ସେ ରୁଚିରତମରୁ ।
ରୂପେ ମନୋହର ମୂର୍ତ୍ତି ରୂପ-ଦେବତାରୁ ଲୋ କୋଇଲି । ୨୭ ।

କୋଇଲି ! ଲାବଣ୍ୟର ସେ ଅଧିଦେବତା ।
ଲହୁଲିବୟସୀ ନେତ୍ର ପଙ୍କଜେ ସବିତା ଲୋ କୋଇଲି । ୨୮ ।

---

୨୨ । ପକ୍ଷ୍ମ — ଅକ୍ଷିପତା ।
୨୪ । ଭାବର ଭିଡ଼ — ପ୍ରେମଭାବନାର ବାହୁଲ୍ୟ ।
୨୫ । ମହୀ ଅଳଙ୍କାର — ପୃଥିବୀର ଭୂଷଣ; ଏକଛତ୍ର ଭୂପ — ସର୍ବେସର୍ବା; ଏକାଙ୍ଗ ଚକ୍ରବର୍ତ୍ତୀ ।
୨୬ । ଯତନ — ସୁନ୍ଦର; ଯୁବା କେ ଚରିନ୍ତି···ତାଙ୍କପରି ଯୁବକ କବି ମାନେ ସୁଦ୍ଧା କଳନା କରି ନାହାନ୍ତି ।
୨୭ । ରୁଚିର — ସୁନ୍ଦର; ରୁଚିରତମରୁ — ସବୁଠାରୁ ସୁନ୍ଦର ।
୨୮ । ରୂପଦେବ — ମଦନ ବା କାର୍ତ୍ତିକେଶ୍ୱର ।

ଭୋଇଲ ! ବସନ୍ତ ସେ ବାମା-ହୃଦ-ବନେ ।
ବ୍ରହ୍ମ ଅସ୍ତ୍ର ଶୋଭାଙ୍ଗୀଙ୍କ ଦମ୍ଭ ବିନାଶନେ ଲୋ ଭୋଇଲ । ୨୯।
ଭୋଇଲ ! ଶୀତାଂଶୁ ସୁନ୍ଦର ଯୁବାମଣି ।
ଶୋଭାଦେବୀ ମଣିମୟ ହାର ମଧ୍ୟମଣି ଲୋ ଭୋଇଲ । ୩୦ ।
ଭୋଇଲ ! ଷଟ୍‌ପଦ ବଦନ-କଞ୍ଜର ।
ଷୋଡ଼ଶୀ ମାରଣ ଅସ୍ତ୍ର ବିଦ୍ଧ ବିଅଣର ଲୋ ଭୋଇଲ । ୩୧ ।
ଭୋଇଲ ! ସରସିଜ-ବଦନ ତାଙ୍କର ।
ସୁମନା-କୁମାରୀ-ବ୍ରତ ଭଞ୍ଜନ ଭିଦୁର ଲୋ ଭୋଇଲ । ୩୨ ।
ଭୋଇଲ ! ହେବ ଲତା ଉର ମହୀରୁହେ ।
ହଂସୀ ହେବ ତାଙ୍କ ଶୋଭା ସରିତ ପ୍ରବାହେ ଲୋ ଭୋଇଲ ।୩୩।
ଭୋଇଲ ! କ୍ଷୀଣାଙ୍ଗ ମୋ ଅଙ୍ଗେ ତାଙ୍କ ତାଳ ।
କ୍ଷୟ ହୀନ ମିଳନରେ ଯିବଇଁ ମୁଁ ମିଳି ଲୋ ଭୋଇଲ । ୩୪ ।

୧୯୪୫



---

୨୯ । ଅଧିଦେବତା — ଅଧିଷ୍ଠାତ୍ରୀ ଦେବତା; ଲହୁଲାଲସୀ — ନୂଆ ବୟସୀ ଅଳ୍ପବୟସୀ; ପଙ୍କଜ — ପଦ୍ମ; ସବିତା — ସୂର୍ଯ୍ୟ ।

୩୦ । ଶୀତାଂଶୁ ସୁନ୍ଦର — ଚନ୍ଦ୍ର ପରି କମନୀୟ, ମଧ୍ୟମଣି — ପଦକ ।

୩୧ । ଷଟ୍‌ପଦ — ଭ୍ରମର; ବଦନକଞ୍ଜ — ମୁଖପଦ୍ମ; ବିଦ୍ଧବିଅଣର — ବିଧାତା ସୃଷ୍ଟିରେ ।

୩୨ । ସୁମନା — ରମଣୀ; କୁମାରୀ ବ୍ରତ — ଅବିବାହିତା ରହିବା ରୂପ ସଂକଳ୍ପ; ଭଞ୍ଜନ — ଭାଙ୍ଗିବାକୁ, ଭିଦୁର — ବଜ୍ର ।

୩୩ । ଉର ମହୀରୁହେ — ଛାତିରୂପ ଗଛରେ; ସରିତ — ନଦୀ ।

୩୪ । ଅଙ୍ଗେ ତାଙ୍କ ତାଳ — ତାଙ୍କ ଉପରକୁ ଅଉଜ ।

—୧୦୦—

# ମହାତ୍ମାଜୀ

( ରାଗ—କାମୋଦୀ )

( ୧ )

ଅଧୋଗତ ଏ ଦେଶ ଛିବ ପଦ-ପରଶ
ଲଭି ହୋଇଲା ସଞ୍ଜୀବିତ

ମାନସ-ପକ୍ଷାଘାତ ହେଲେ ତା ହେଲା ହତ
ନିଗଡ଼ ପଦୁରୁ ସ୍ଖଳିତ

ହେ ମହାତ୍ମାଜୀ !
ଭଲ ହୋଇଲ ଯାଦୁକର
ଉଚ୍ଚାରି ଅହିଂସା ମନ୍ତ୍ର,

ବଣ କଲ କେଶରୀ; ହେବାକୁ ତୁମ୍ଭ ସର
ନ ବହେ ମେଦିନୀ ଅପର ।
ହେ ମହାତ୍ମାଜୀ !

---

୧ । ଅଧୋଗତ—ଅବନତ; ହୋଇଲା ସଞ୍ଜୀବିତ—ନବଜୀବନ ଲାଭ କଲା; ମାନସ ପକ୍ଷାଘାତ—ମନର ନିର୍ଜୀବତା ( mental paralysis ); ନିଗଡ଼—ବେଡ଼ି; ସ୍ଖଳିତ—ଖସିଗଲା; ଯାଦୁକର—ମନ୍ତ୍ରୀଆ; କେଶରୀ—ବ୍ରିଟିଶ ସିଂହ; ଅପର—ଆଉ ଜଣେ ।

(୨)

କଷଣ କଣ୍ଟକର ମୁକୁଟ ବନ୍ଧ ଶିର
ଛଅଗ-ଛଦ ପରିଧାନ
ଗ୍ଳଶ-କୋଟି ଜନ— ଅନ୍ତର ସିଂହାସନ
ଈଶ୍ୱର ହୋଇଲ ବିଜ୍ଞାନ !
ହେ ମହାତ୍ମାଜୀ !
ପ୍ରଜ୍ଞାର ଅଲୋକେ ତୁମ୍ଭର
ଧର୍ମ ଏ ହୋଇଲା ଭାସ୍ୱର,
ଗୀତା, ବେଦ, ବେଦାନ୍ତ ହେଲେ ବିଗ୍ରହବନ୍ତ
ଅଶ୍ରାନ୍ତ ଜୀବନେ ତୁମ୍ଭର
ହେ ମହାତ୍ମାଜୀ !

(୩)

ଦଳିତର ମୁକତି— ବୃଥା ନୋହିଲ ମତି
ଲଭିଲ ମୂକ-ମୁଖେ ଭାଷା

---

୨ । କଷଣ କଣ୍ଟକର ମୁକୁଟ……ଭାରତର ମୁକ୍ତି ପାଇଁ ବହୁ କଷଣ ଓ ବହୁ ନିର୍ଯ୍ୟାତନା ତୁମ୍ଭେ ବହି ନେଇଛ, ଛଅଗ—ତ୍ୟାଗ; ଛଦ—ପୋଷାକ; ଈଶ୍ୱର—ଅଧିପତି; ଭାସ୍ୱର—ଉଜ୍ଜ୍ୱଳ; ଗୀତା, ବେଦ… —ଏ ସବୁର ମର୍ମକୁ ତୁମ୍ଭେ ଜୀବନରେ ସଫଳ କଲ ।

୩ । ଦଳିତ—ଅତ୍ୟାଚାରିତ;

ଅଗଣିତ ଶତାବ୍ଦୀ ପାଇଁ ଯେ ଅହେ ସୁଧୀ !
ଗଲ୍ ସରଜ କେତେ ଆଶା
ହେ ମହାତ୍ମାଜୀ !
ଦଳିତ-ଗଉରବ-ଦାତା
ମୁକତ-ଭାରତ-ବିଧାତା,
ଅସହାୟ ଅବଳ ଜାତ ଅଶା କମଳ
ପ୍ରକାଶ କାରକ ସବିତା
ହେ ମହାତ୍ମାଜୀ !

୨୬-୬-୧୯୪୬



---

ତୁମ୍ଭେ ସମ୍ମାନ ଦେଇ ଅଛ; ମୁକତ ଭାରତ ବିଧାତା—ସ୍ୱାଧୀନ ଭାରତର ଜନକ; ସବିତା—ସୂର୍ଯ୍ୟ । ଦଳିତ-ଗଉରବ-ଦାତା—ଦଳିତମାନଙ୍କୁ ।



—୧୦୧—

# ମିନତି

( ରାଗ—ରେଙ୍ଗ )

ପାଠକ-ପାଠିକା ମୋର ! ମୁଁ ଅପଟୁ ମାଳାକର !
ଏ ସଂସାର ଆରାମର; ଦୋଷ ମୋ କ୍ଷମ;
ଅତୁଳ ମାଧୁରୀମୟ ମନୋଜ୍ଞ ସୁମନଚୟ
ତୋଳିବା ପାଇଁ କି ହାୟ ! ନୁହେଁ ମୁଁ କ୍ଷମ;
ଗୁନ୍ଥି ଅଳ୍ପ ସୁମ ଅଧମ
ଦେନା ହେବା ପାଇଁ ତୁମ୍ଭ ରଚିଛୁ ଦାମ । ୧ ।

ମନୋଜ୍ଞ ଦିବ୍ୟ ସୁମନ ନ କରି ପାରି ଚୟନ
ଭୁଲଇଁ କିମ୍ପା ଜୀବନ ମୋ ଅକାରଣ
ଭବିଷ୍ୟତ ଯୁଗ ପାଇଁ ନ ପାରେଁ ମୁଁ ପଠାଇ
ସୁଗନ୍ଧ ମୋର ପୂରାଇ ବର ସୁମନ
ଏ-ମନୋଜ୍ଞ-ଯୁଗ-ମୁକୁର
କାହିଁ ଭାଗ୍ୟ ? ହେବ ଭଲ କବିତା ମୋର ? ୨ ।

ହେ ଭବିଷ୍ୟ ନାଗ୍ରନର ! ଯବେବ ସୁଷମା ସାର
ନ ପାରେଁ ପେଷି ରସାର, ଲେଖନୀ ପୋତେ

---

୧ । ଅପଟୁ—ଅପାରଗ; ମାଳାକର—ମାଳୀ; ଆରାମ—ବଗିଚା; ମନୋଜ୍ଞ—ସୁନ୍ଦର; ସୁମ—ଫୁଲ; ଅଧମ—ନିକୃଷ୍ଟ; ଦାମ—ହାର

୨ । ବର—ଶ୍ରେଷ୍ଠ ।

୩ । ଯବେବ—ଠିକଏ ହେଲେ, ସୁଷମାସାର—ଶ୍ରେଷ୍ଠ ଶୋଭା; ରସା—ପୃଥିବୀ; ଲେଖନୀ ପୋତ—ମୋ କଲମ ରୂପ ଜାହାଜରେ;

ଲଭିଣି ଭାଗ୍ୟ-ପାହାର ଭଗ୍ନପୋତ ବଣିଜାର
ବାଲପରି ଅନବାର ବେଲା ସୈକତେ
ଯେପରି ଯା ଭେଳାରେ ଥୋଇ
ପହଞ୍ଚିବ ପାଶେ ତୁମ୍ଭ ଆଶା ମୋ ନାହିଁ । ୩ ।

ଭାଇ ଦକ୍ଷ ମାଳାକର ! ରଚିଛ ଯେ ଅବା ହାର
ନାଅ ରେ ଚଲାଇ ମୋର ରଚନା ଯାନ
ମାଡ଼ି ନାହିଁ ପାଦ ମୋର ଯଶୋମନ୍ଦର-ଦୁଆର
ନୁହଇ ମୋରେ ଗୋଚର ସେ ସିଂହାସନ
ବସି ଯହିଁ ଜନନୀ ବାଣୀ
ଦିଅନ୍ତି ଭକତଜନେ ଜୟନ-ମଣି । ୪ ।

୧୯୪୫



---

ଭାଗ୍ୟ ପାହାର—ଦୁର୍ଦ୍ଦୈବର ଦଣ୍ଡ; ଭଗ୍ନ ପୋତ—ଯାହା ଜାହାଜ ଭାଜି ଯାଇଛି; ବଣିଜାର—ବଣିକ; ଅନବାର—ଅନବରତ; ବେଲା-ସୈକତେ—ଉପକୂଳ ବାଲିରେ ।

୪ । ଦକ୍ଷମାଳାକର-ଯଶସ୍ୱୀ କବିମାନେ; ଜୈତ୍ରମଣି-ଜୟ ଦାୟକ ମଣି ।

## ସ ମା ପ୍ତ



ନବଯୁଗ ପ୍ରେସରେ ଶ୍ରୀ ଅନନ୍ତ ପଟ୍ଟନାୟକଙ୍କ ଦ୍ୱାରା ମୁଦ୍ରିତ ।

# ଆ ଶୀ ର୍ବା ଦ

ନବଭାରତର ସଂପାଦକ

## ପଣ୍ଡିତ ଶ୍ରୀଯୁକ୍ତ ନୀଳକଣ୍ଠ ଦାସ, ଏମ୍. ଏ

"ଶ୍ରୀମାନ୍ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ 'କବିତା କୁମୁଦ' ପୁସ୍ତକଟିରେ ଏଠି ସେଠି ଆଖି ପକାଇଗଲି । କବିତା କ୍ଷେତ୍ରରେ ବିଚ୍ଛନ୍ଦବାବୁ ଉତ୍କଳରେ ସୁପରିଚିତ । ଇଂରେଜ ପୂର୍ବଯୁଗରେ ଭାରତରେ ଦେଶୀ ଭାଷାମାନଙ୍କ ମଧ୍ୟରେ ଓଡ଼ିଆର ଛନ୍ଦ ଗୋଟିଏ ବିଶିଷ୍ଟତା । ବିଚ୍ଛନ୍ଦବାବୁ ଏକା ଏବେ ସେହି ବିଶିଷ୍ଟତାର ଭକ୍ତ ଓ ସେଥିର ଜଣେ ଶ୍ରେଷ୍ଠ ସାଧକ । ସେହି ପ୍ରାଚୀନ ଛାଞ୍ଚରେ ନବୀନ କବିତାର ପ୍ରାଣ ସ୍ପନ୍ଦନ ଫୁଟାଇବାରେ ସେ କୃତୀ । ତାଙ୍କର ଏହି ପ୍ରାଚୀନ ନବୀନର ଅଦ୍ଭୁତ ଓ ରୁଚିକର ସମୁଚ୍ଚୟ ଉତ୍କଳ ସାହିତ୍ୟକୁ ଏକ ସ୍ୱତନ୍ତ୍ର ଦାନ । ଏ ସଂଗୃହୀତ କବିତାର ପୁସ୍ତକଟି ସେହି ଦାନର ପ୍ରତୀକ ଓ ନିଦର୍ଶନ । ଓଡ଼ିଶାର ସାହିତ୍ୟସାଧକମାନେ ଏହାର ଯଥା ବିହିତ ଆଦର କରନ୍ତୁ ।"

ପୂର୍ବତନ ଶିକ୍ଷାମନ୍ତ୍ରୀ

## ପଣ୍ଡିତ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର

ଏମ୍. ଏ. ବି. ଟି

"ଶ୍ରୀଯୁକ୍ତ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କର 'କବିତା କୁମୁଦ' ଗୀତ ପୁସ୍ତକ ମୁଁ ମୂଳରୁ ଶେଷ ପର୍ଯ୍ୟନ୍ତ ବିଶେଷ ଆଗ୍ରହରେ ପଢ଼ି ଅଛି ଓ ବହୁତ ଆନନ୍ଦ ଲାଭ କରିଅଛି ।

✿ ✿ ✿

କବି ବିଚ୍ଛନ୍ଦଚରଣ କବିତା କୁମୁଦରେ ନିଜର ପ୍ରତିଭା ବେଶ୍ ଦେଖାଇ ଅଛନ୍ତି । ମୁଁ ତାଙ୍କର ଅନେକ ଗୁଡ଼ିଏ କବିତା ପଢ଼ି ମୁଗ୍ଧ ହେଲି । କେଉଁ ଛନ୍ଦରେ ଲେଖିବା ଦରକାର ସେ ନିଜେ ତାହା ସ୍ଥିର କରିବେ । ମାତ୍ର ସେ ଯେଉଁ ଛନ୍ଦ ବ୍ୟବହାର କରନ୍ତୁ, ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସେ ଯେ କେତେ ଗୁଡ଼ିଏ କବିତା ରତ୍ନରେ ପୂର୍ଣ୍ଣ କରିବେ ସେଥିରେ ସନ୍ଦେହ ନାହିଁ । ତାଙ୍କର ସେ ଶକ୍ତି ଅଛି । ସମୟ ଓ ଅନୁକୂଳ ପରିସ୍ଥିତି ପାଇଲେ ସେ ଓଡ଼ିଆ ସାହିତ୍ୟର ବିକାଶରେ ଯଥେଷ୍ଟ ସାହାଯ୍ୟ କରି ପାରିବେ ।"

# କଳିଙ୍ଗ ଭାରତୀ

ପ୍ରତିଷ୍ଠାତା:—

## ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ



ପ୍ରାଚୀନ ପରମ୍ପରା ରକ୍ଷା କରି କଳିଙ୍ଗର ସାହିତ୍ୟ, ସଂଗୀତ ଓ ଅନ୍ୟାନ୍ୟ ଲଳିତ କଳାକୁ ନବଯୁଗୋପଯୋଗୀ ଛାଞ୍ଚରେ ଗଢ଼ିବା ନିମନ୍ତେ କଳିଙ୍ଗ ଭାରତୀ ପ୍ରତିଷ୍ଠାନର ଜନ୍ମ ।

କୃଷ୍ଟି କ୍ଷେତ୍ରରେ ପ୍ରାଚୀନର ସଂରକ୍ଷଣ ଓ ପ୍ରାଚୀନକୁ ମୂଳଭିତ୍ତି କରି ନବୀନର ସୃଷ୍ଟି କଳିଙ୍ଗ ଭାରତୀର କାର୍ଯ୍ୟ ।

ନବୀନ କଳିଙ୍ଗ ସାହିତ୍ୟର ସୃଷ୍ଟି ଓ ପ୍ରାଚୀନ କଳିଙ୍ଗ ସାହିତ୍ୟର କୃଷ୍ଟିର ମର୍ମ ଉନ୍ମୋଚନ କରି ସମସ୍ତ ଜଗତ ଆଗରେ ତାହାର ଉପସ୍ଥାପନ ନିମନ୍ତେ 'କଳିଙ୍ଗ ଭାରତୀ ମନ୍ଦିର'ର ନିର୍ମାଣ, ପ୍ରାଚୀନ କଳିଙ୍ଗ (ଓଡ଼ିଶି) ସଂଗୀତକୁ ଅନାଦୃତ ଭାଗ୍ୟ ତାହାର ପୁନରୁଦ୍ଧାର ସାଧନ ନିମିତ୍ତ 'କଳିଙ୍ଗ ଭାରତୀ ସଂଗୀତ ବିଦ୍ୟାମନ୍ଦିର'ର ପ୍ରତିଷ୍ଠା ଏବଂ ଅନ୍ୟାନ୍ୟ ପ୍ରାଚୀନ କଳିଙ୍ଗ ଲଳିତ କଳାର ଉତ୍କର୍ଷ ପ୍ରତିପାଦନ କରି ସମସ୍ତ ଜଗତରେ ତାହାର ପ୍ରଚାର ଓ ପ୍ରସାର ନିମନ୍ତେ 'କଳିଙ୍ଗ ଲଳିତ କଳା ମନ୍ଦିର'ର ସଂସ୍ଥାପନ କଳିଙ୍ଗ ଭାରତୀ ପ୍ରତିଷ୍ଠାନର ଅନ୍ୟ ଲକ୍ଷ୍ୟ ।

## ଜୟ ମା କଳିଙ୍ଗ ଭାରତୀ